ବୌଦ୍ଧ ଜାତକମାଳା—ଏକ

# ଜାତକ କାହାଣୀ

## ପ୍ରଥମ ଖଣ୍ଡ

ଅନୁବାଦକ

ଅଧ୍ୟାପକ ଶ୍ର[redacted]ର ଦାସ

ଗ୍ରନ୍ଥମନ୍ଦିର

Digitized by srujanika@gmail.com

ପ୍ରକାଶକ :
ଅଭିରାମ ମହାପାତ୍ର
ଗ୍ର ନ୍ଥ ମ ନ୍ଦି ର
କଟକ-୨ : ବ୍ରହ୍ମପୁର-୧

ମୁଦ୍ରାକର :
ଜୟରାମ ମହାପାତ୍ର
ଗ୍ର ନ୍ଥ ପ୍ର କା ଶି ନୀ
କଟକ-୧

ପ୍ରଥମ ମୁଦ୍ରଣ, ମେ, ୧୯୭୨
ଦ୍ୱିତୀୟ ମୁଦ୍ରଣ, ଜୁନ୍, ୧୯୭୪

ମୂଲ୍ୟ :
ଟ ୪-୦୦

Digitized by srujanika@gmail.com

# ସୂଚୀପତ୍ର



Digitized by srujanika@gmail.com

# ଇଲ୍ଲିସ ଜାତକ

ବ୍ରହ୍ମଦତ୍ତ ବାରାଣସୀରେ ରାଜତ୍ୱ କରୁଥିବା ସମୟରେ ସେଠାରେ ଇଲ୍ଲିସ ନାମରେ ଜଣେ ଶ୍ରେଷ୍ଠୀ ବାସ କରୁଥିଲା । ସେ ଅଶୀ କୋଟି ସ୍ୱର୍ଣ୍ଣମୁଦ୍ରାର ଅଧିକାରୀ ଥିଲେହେଁ ନିତାନ୍ତ କଦାକାର ଥିଲା । ସେ ଖଞ୍ଜ ଓ କୁବ୍‌ଜ ଥିଲା; ଚକ୍ଷୁରେ ଦୋଷ ହୋଇଥିବାରୁ ସେ ବକ୍ରଦୃଷ୍ଟିରେ ଚାହୁଁଥିଲା । ତା ଭଳି କୃପଣ ଦେଖା ନଥିଲେ । ଈଶ୍ୱରଙ୍କଠାରେ ତାର ଆଦୌ ବିଶ୍ୱାସ ନଥିଲା । ସେ କେବେ-ହେଲେ କିଛି କାହାରିକୁ ଦାନ କରୁ ନଥିଲା କିମ୍ବା ନିଜେ କିଛି ଉପଭୋଗ କରୁ ନଥିଲା ।

ଇଲ୍ଲିସର ସପ୍ତପୁରୁଷ ଦାନ ନିମନ୍ତେ ଖ୍ୟାତି ଲାଭ କରି-ଥିଲେ । ଅତିଥିଶାଳା ନିର୍ମାଣ କରି ସେଠାରେ ସେମାନେ ସହସ୍ର ସହସ୍ର ଲୋକଙ୍କୁ ଆଶ୍ରୟ ଦେଉଥିଲେ । କିନ୍ତୁ ଇଲ୍ଲିସ ଶ୍ରେଷ୍ଠୀ-ପଦରେ ପ୍ରତିଷ୍ଠିତ ହେବା ପରେ ଅତିଥିଶାଳାଗୁଡ଼ିକ ଧ୍ୱଂସ କରି ଦେଇଥିଲା । ଦରିଦ୍ର ଓ ଅସହାୟ ଲୋକମାନେ ତାହାଦ୍ୱାରା ବିତାଡ଼ିତ ହୋଇ ପଳାୟନ କରିଥିଲେ ।

ଏକଦା ଇଲ୍ଲିସ ରାଜଦର୍ଶନ ପରେ ପ୍ରାସାଦରୁ ନିଜ ଘରକୁ ଆସିବା ସମୟରେ ପଥ ମଧ୍ୟରେ ଜଣେ ଲୋକକୁ ଦେଖିଲା । ସେ ପଥଶ୍ରାନ୍ତିରେ କ୍ଲାନ୍ତ ହୋଇ ଜଣକର ପିଣ୍ଡାରେ ବସି ଗୋଟିଏ ମାଟିପାତ୍ରରୁ ତାଡ଼ି ପିଉଥିଲା । ତା ସଙ୍ଗେ ଖଣ୍ଡେ ଖଣ୍ଡେ ଶୁଖୁଆ-

Digitized by srujanika@gmail.com

ପୋଡ଼ା ଖାଉଥିଲା । ଏହା ଦେଖି ଇଲ୍ଲିସର ତାଡ଼ି ପିଇବାକୁ ମନ ହେଲା; କିନ୍ତୁ ସେ ଭାବିଲା—ମୁଁ ତାଡ଼ି ପିଇଲେ ଘରର ଆଉ-ମାନେ ମଧ୍ୟ ପିଇବାକୁ ଚାହିଁବେ; ସମସ୍ତଙ୍କୁ ତାଡ଼ି ପିଇବାକୁ ଦେଲେ ମୋ କଥା ସରିଯିବ । ତେଣୁ ସେ ମନକଥା ମନରେ ମାରି ରହିଲା । କିନ୍ତୁ ଦିନକୁ ଦିନ ସେହି ତାଡ଼ି ପିଇବା କଥା ଭାବି ଭାବି ସେ ଶୁଖିଗଲା । ଦେହର ହାଡ଼ ଗଣିହୋଇଗଲା; ଆଖି କୋରଡ଼ରେ ପଶିଗଲା ପରି ଦିଶିଲା । ଦିନେ ସେ ଖଟ ଉପରେ ପଡ଼ିଛି ଏହି ସମୟରେ ତାର ସ୍ତ୍ରୀ ଆସି ପଚାରିଲା, "ତୁମେ ଦିନକୁ ଦିନ ଏପରି ଶୁଖିଯାଉଛ । ଖାଇବାପିଇବାରେ ହେଳା କରୁଛ । ସବୁବେଳେ କଅଣ ଭାବୁଛ । ତୁମ ମନକଥା ମତେ କହ ।"

ଇଲ୍ଲିସ ତାଡ଼ି ପିଇବାକୁ ମନ କରିଥିବା କଥା କହିଲା । ତହୁଁ ତା ସ୍ତ୍ରୀ କହିଲା, "ଏଥିପାଇଁ ଚିନ୍ତାର କାରଣ ନାହିଁ । ଯେତେ ଇଚ୍ଛା ସେତେ ମଦ ଘରେ ତିଆରି କରିବା, ସମସ୍ତେ ଆନନ୍ଦରେ ପିଇବେ ।" ଏହା ଶୁଣି ଇଲ୍ଲିସ କହିଲା, "ସେଇଥିପାଇଁ ମୁଁ କହୁ ନଥିଲି । ମୁଁ ପିଇଲେ ଘରର ଚାକରବାକର ପର୍ଯ୍ୟନ୍ତ ସମସ୍ତେ ପିଇବାକୁ ବାହାରିବେ । ବୁଝିପାରୁନ, ଏଥିରେ କେତେ ଖରଚ ହେବ ?"

ତହୁଁ ଇଲ୍ଲିସର ସ୍ତ୍ରୀ କହିଲା, "ଯେବେ ଖର୍ଚ୍ଚକୁ ଭୟ କରୁଛ, ତେବେ ଗୋଟିଏ କଥା କରାଯାଉ । କେବଳ ତୁମରି ପାଇଁ ମଦ ତିଆରି କରିବା; ତୁମେ ପିଇଲେ ହେଲା ।" ଇଲ୍ଲିସ କହିଲା, "ନା, ସେ କଥା ହେବନି । ଘରେ ମଦ ଦେଖି ଅନ୍ୟମାନେ ପିଇବାକୁ ମନ କରି ମୋତେ ମାଗିବେ । ଘର ଭିତରେ ମଦ ପିଇବା ଅସମ୍ଭବ ।" ସେ ଚାକରକୁ ଗୋଟିଏ ଅଣି ଦେଇ କହିଲା, "ଯାଆ,

Digitized by srujanika@gmail.com

ମଦଭାଟିରୁ ଅଣାକର ମଦ କଣି ଆଣିବୁ । ମଦ ଆସିବାରୁ ସେ ମଦ ବୋତଲଟିକୁ ଧରି ନଈକୂଳକୁ ଚାଲିଗଲା । ନଈକୂଳେ ଗୋଟିଏ ବୁଦା ଭିତରେ ଲୁଚି ବସି ସେ ମଦ ପିଇବାକୁ ଲାଗିଲା ।

ଇଲ୍ଲିସର ପିତା ଜଣେ ଦୟାଳୁ ଲୋକ ଥିଲେ । କେହି କିଛି ମାଗିଲେ ତାକୁ ଶୂନ୍ୟହାତରେ ଫେରିବାକୁ ଦେଉ ନଥିଲା । ଦରିଦ୍ର ଜନସାଧାରଣଙ୍କ ପାଇଁ ସେ କେତେଗୁଡ଼ିଏ ଅନୁଷ୍ଠାନ ବସାଇଥିଲେ । ଅନ୍ନସତ୍ରରେ ପ୍ରତ୍ୟହ କ୍ଷୁଧାର୍ତ୍ତ ଲୋକଙ୍କୁ ଅନ୍ନ ଦିଆଯାଉଥିଲା; ଚିକିତ୍ସାଳୟରେ ରୋଗୀମାନଙ୍କୁ ବିନାମୂଲ୍ୟରେ ଚିକିତ୍ସା କରାଯାଉଥିଲା । ମୃତ୍ୟୁପରେ ସେ ସ୍ୱର୍ଗରେ ଦେବରାଜ ଶକ୍ରରୂପେ ଥାଇ ଜାଣିଲେ ଯେ ତାଙ୍କର ସେହି ଦାତବ୍ୟ ଅନୁଷ୍ଠାନକୁ ଇଲ୍ଲିସ ଉଠାଇ ଦେଇଅଛି । କାହାରିକୁ କିଛି ଦାନ କରିବା ତ ଦୂରର କଥା, ନିଜ ପାଇଁ ବା ନିଜ ପରିବାର ପାଇଁ ପଇସାଟିଏ ଖର୍ଚ୍ଚ କରିବାକୁ ମଧ୍ୟ ସେ କୁଣ୍ଠିତ । କେହି ଭିକ୍ଷୁକ ତା ଦ୍ୱାରକୁ ଆସିଲେ ଭିକ୍ଷା ପରିବର୍ତ୍ତେ ପ୍ରହାର ପାଉଛି । ପରିବାରର ଲୋକେ ପିଇବାକୁ ଚାହିଁବେ ବୋଲି ସେ ନଈକୂଳେ ବୁଦାମୂଳେ ଲୁଚି ମଦ ପିଉଥିବା କଥା ମଧ୍ୟ ତାଙ୍କୁ ଅଜଣା ରହିଲା ନାହିଁ । ସେ ଭାବିଲେ, 'ପୁଅକୁ ଶିକ୍ଷାଦେବା ଦରକାର । କର୍ମ ଅନୁସାରେ ଯେ ଫଳ ମିଳେ, ତାହା ସେ ଭୁଲିଯାଇଅଛି । ତାର କୃପଣତା ଦୂର ନ କଲେ ସେ ଅମନୁଷ୍ୟ ହୋଇଯିବ ।'

ଏହିପରି ବିଚାର କରି ସେ ଅବିକଳ ଇଲ୍ଲିସର ରୂପ ଧରି ପୃଥିବୀକୁ ଆସିଲେ । ଠିକ୍ ତାର ପରି ଖୋଙ୍ଗା, ତାର ପରି କୁଜା ଓ ତାର ପରି ଟେରା । ଏହି ରୂପରେ ସେ ନଗରରେ ଉପସ୍ଥିତ ହେଲେ । ସେ ରାଜପ୍ରାସାଦକୁ ଯାଇ ପ୍ରହରୀକୁ କହିଲେ, ମୁଁ ରାଜାଙ୍କ

Digitized by srujanika@gmail.com

ଦର୍ଶନ ପାଇଁ ଆସିଛୁ । ମୋର ନାମ ଇଲ୍ଲିସ ।” ପ୍ରହରୀ ରାଜାଙ୍କ ଅନୁମତି ଆଣି ତାଙ୍କୁ ରାଜାଙ୍କ ନିକଟକୁ ନେଇଗଲା ।

ଛଦ୍ମବେଶୀ ଶକ୍ର କହିଲେ, “ମହାରାଜ ! ମୋର ଘରେ ଅଶୀ କୋଟି ମୁଦ୍ରା ଅଛି । ମୋର ଅନୁରୋଧ ଆପଣ ତାକୁ ରାଜ-ଭଣ୍ଡାରକୁ ନେଇଆସନ୍ତୁ ।”

ରାଜା କହିଲେ, “ହେ ଶ୍ରେଷ୍ଠି ! ମୋର ଧନର ଅଭାବ ନାହିଁ । ମୁଁ କାହିଁକି ତୁମର ଧନକୁ ରାଜକୋଷକୁ ଆଣିବି ?”

ତହୁଁ ଶକ୍ର କହିଲେ, “ଆପଣ ନ ଆଣିଲେ ମୁଁ ସେହି ଧନକୁ ଯାହାକୁ ଇଚ୍ଛା ତାକୁ ବିତରଣ କରିଦେବି ।”

ରାଜା କହିଲେ, “ସେଥିରେ ମୋର ଆପତ୍ତି କରିବାର କାରଣ ନାହିଁ । ତୁମେ ସ୍ୱଚ୍ଛନ୍ଦରେ ତୁମର ଧନକୁ ଯାହାକୁ ଇଚ୍ଛା ତାକୁ ଦାନ କରିପାର ।”

ତତ୍ପରେ ଇଲ୍ଲିସରୂପୀ ଶକ୍ର ରାଜାଙ୍କୁ ପ୍ରଣାମ କରି ବିଦାୟ ନେଲେ । ସେହି ଇଲ୍ଲିସର ରୂପ ଧରି ସେ ପୁଅର ଘରେ ଉପସ୍ଥିତ ହେଲେ । ଇଲ୍ଲିସର ସ୍ତ୍ରୀ ଓ ଚାକରମାନେ ତାଙ୍କୁ ଇଲ୍ଲିସ ଛଡ଼ା ଅନ୍ୟ କେହି ବୋଲି ସନ୍ଦେହ କରିବାର କାରଣ ନ ଥିଲା । ସେ ଜଣେ ଭୃତ୍ୟକୁ ଡାକି କହିଲେ, “ତୁ ଏହି ଦ୍ୱାର ପାଖରେ ଜଗି ରହିଥିବୁ, ମୋହରି ଭଳି କେହି ଲୋକ ଆସି ଯଦି ନିଜକୁ ଇଲ୍ଲିସ ବୋଲି କହେ ଓ ଘର ଭିତରକୁ ଯିବାକୁ ଚାହେଁ, ତେବେ ତାକୁ ମାଡ଼ପିଟି ତଡ଼ିଦେବୁ ।”

ଏହା କହି ସେ ଉପର ମହଲକୁ ଯାଇ ଇଲ୍ଲିସର ସ୍ତ୍ରୀକୁ ଡାକି କହିଲେ, “ପ୍ରିୟେ ! ମୋର ମନର ପରିବର୍ତ୍ତନ ହୋଇଅଛି । ମୁଁ ସ୍ଥିର କରିଛି ଯେ ଏଣିକି ଦାନ ଧର୍ମ କରିବା ।”

Digitized by srujanika@gmail.com

ଇଲ୍ଲିସର ସ୍ତ୍ରୀ ଏହା ଶୁଣି ଅତି ଆନନ୍ଦିତ ହେଲା । ଘରର ପିଲାମାନେ ଓ ଚାକରମାନେ ମଧ୍ୟ ଏଥିରେ ଆନନ୍ଦିତ ହେଲେ । ସେ ଜଣେ ଚାକରକୁ କହିଲେ, "ଯାଆ, ସହରରେ ଢେଙ୍ଗୁରା ବାଇ ଜଣାଇ ଦେ—ଇଲ୍ଲିସ ଆଜ ଦାନ ଦେଉଛନ୍ତି । ଟଙ୍କା, ସୁନା, ହୀରା, ମାଳା, ଲୁଗା, ବାସନ ଯିଏ ଯାହା ଚାହିଁବ ତାହା ତାକୁ ଦିଆଯିବ ।"

ଅବିଳମ୍ବେ ଏହି ଘୋଷଣା ଶୁଣି ସହସ୍ର ସହସ୍ର ଲୋକ ଶ୍ରେଷ୍ଠୀଙ୍କ ଦ୍ୱାରରେ ରୁଣ୍ଡ ହେଲେ । ଶଙ୍ଖ ଭଣ୍ଡାର ଖୋଲିଦେଇ କହିଲେ—"ଯାହାର ଯାହା ଇଚ୍ଛା ହେଉଛି ସେ ତାହା ନେଇ ଚାଲିଯାଉ । ଏହା ମୋର ଦାନ ।"

ଲୋକେ ଯଥେଚ୍ଛା ଧନ ନେବାକୁ ଲାଗିଲେ । କେହି ଅଖାରେ ବାନ୍ଧି ମୁଣ୍ଡରେ ନେଲା, କେହି ଶଗଡ଼ରେ ନେଲା, କେହି ଅବା ଘୋଡ଼ା ବା ବଳଦ ଉପରେ ଲଦି ନେଲା । ଏହି ଲୋକମାନଙ୍କ ମଧ୍ୟରୁ ଜଣେ ଇଲ୍ଲିସର ଶଗଡ଼ରେ, ଇଲ୍ଲିସର ବଳଦକୁ ଯୋଚି ତାର ଧନକୁ ନେଇ ରାସ୍ତା ଉପରେ ଯାଉଥିଲା । ନଗରକୂଳରେ ରାସ୍ତା ଉପରେ ଯାଉ ଯାଉ ସେ କହିଲା—"ହେ ଇଲ୍ଲିସ ! ତୁମେ ଶତାୟୁ ହୁଅ । ଈଶ୍ୱର ତୁମର ମଙ୍ଗଳ କରନ୍ତୁ । ତୁମ ଦୟାରୁ ମୋର ସମଗ୍ର ଜୀବନ ସୁଖରେ କଟିଯିବ । ଏଇ ଶଗଡ଼, ଏଇ ବଳଦ, ଏଇ ଧନ ସବୁ ତୁମର ଥିଲା । ଏବେ ତୁମେ ଏସବୁ ମୋତେ ଦାନ କରିଅଛ । ତୁମ ପରି ଦୟାଳୁ ଧାର୍ମିକ ଲୋକ ଆଉ କିଏ ଅଛି ?"

ବୁଦା ଭିତରେ ଲୁଚିରହି ଇଲ୍ଲିସ ମଦ ପିଉଥିଲା । ଏହି କଥାଗୁଡ଼ିକ ତା କାନରେ ପଡ଼ିଲା । ସେ ଉଠି ଦେଖିଲା ଯେ ପ୍ରକୃତରେ ତାର ଶଗଡ଼, ତାର ବଳଦ । ସେଥିରେ ତାର ଧନ ଲଦାହୋଇଛି ଓ ଜଣେ କେହି ଶଗଡ଼ ଚଳାଉଛି । ତାର ଦେହ

Digitized by srujanika@gmail.com

ଥରେଗଲା । ତାକୁ କିଛୁ ବୁଦ୍ଧି ଦେଖାଗଲା ନାହିଁ । ସେ ଭାବିଲା— 'ରାଜା କଅଣ ଅନ୍ୟାୟରେ ମୋର ଧନସମ୍ପତ୍ତି ଲୁଟି କରି ବାଣ୍ଟି-ଦେଉଅଛନ୍ତି ?'

ସେ ଧୈର୍ଯ୍ୟ ଧରି ନ ପାରି ଦଉଡ଼ି ଆସି ଗାଡ଼ିକୁ ଅଟକାଇ କହିଲା, "ମୋ ଶଗଡ଼ ମୋ ବଳଦକୁ ନେଇ ତୁ କୁଆଡ଼େ ଯାଉଛୁ ?"

ଲୋକଟି ଗାଡ଼ିରୁ ଓହ୍ଲାଇପଡ଼ି ଇଲ୍ଲିସକୁ ଧକ୍କା ଦେଇ କହିଲା, "ଅବେ, ତୁ କହିବାକୁ କିଏ ? ଆଜି ଇଲ୍ଲିସ ଭଣ୍ଡାର ଖୋଲି ଦାନ ଦେବାରେ ଲଗିଛନ୍ତି । ତୁ ଯାଉନୁ, ଯାହା ଇଚ୍ଛା ଆଣିବୁ । ଜୟ ଇଲ୍ଲିସଙ୍କର ଜୟ !" ଏହା କହି ସେ ଇଲ୍ଲିସକୁ ଧକ୍କା ମାରି ରାସ୍ତାରୁ ଠେଲିଦେଲା ଓ ଆନନ୍ଦରେ ଗାଡ଼ି ଚଳାଇବାକୁ ଲଗିଲା ।

ଇଲ୍ଲିସ କୌଣସିମତେ ଉଠି ଗାଡ଼ି ପଛେ ପଛେ ଧାଇଁ ପୁଣି ଗାଡ଼ିକୁ ଅଟକାଇଲା । ଏଥର ଲୋକଟି ଗାଡ଼ିରୁ ଓହ୍ଲାଇ ଇଲ୍ଲିସକୁ ଯଥେଷ୍ଟ ମାଡ଼ଦେଇ ରାସ୍ତାକଡ଼କୁ ଗଡ଼ାଇ ଚାଲିଗଲା ।

ଇଲ୍ଲିସ ଦେଖିଲା, ଦେହର ବଳରେ ସେ କିଛି କରି ପାରିବ ନାହିଁ; ବରଂ ଘରକୁ ଯାଇ ପ୍ରକୃତ ଘଟନା ବୁଝି ପ୍ରତିକାର କରିବ । ଏହା ଭାବି ସେ ଘରକୁ ଗଲା; କିନ୍ତୁ ସେଠାରେ ସେ ଯାହା ଦେଖିଲା, ସେଥିରେ ତାର ବୁଦ୍ଧି ବଣା ହୋଇଗଲା । ହଜାର ହଜାର ଲୋକ ତା ଭଣ୍ଡାରର ଧନସମ୍ପତ୍ତି ବୋହିନେବାରେ ଲଗିଛନ୍ତି । ସେ କାହାରିକୁ ଅଟକାଇଲାମାତ୍ରେ ତାହାଠାରୁ ମାଡ଼ ଗାଳି ଛଡ଼ା ଆଉ କିଛି ପାଇଲା ନାହିଁ । ସେତେବେଳକୁ ତାର ଦେହଯାକ ଫୁଲି-ଯାଇଥାଏ, କେତେ ଜାଗାରୁ ରକ୍ତ ବହୁଥାଏ । ସେ ଲୋକଙ୍କ

Digitized by srujanika@gmail.com

ମାଡ଼ରୁ ରକ୍ଷା ପାଇବା ପାଇଁ ନିଜ ଘର ଭିତରେ ପଶିପିବା ପାଇଁ ଚେଷ୍ଟା କଲା । କିନ୍ତୁ ପ୍ରହରୀ ତାକୁ ପ୍ରହାର କରି ଦୂରକୁ ତଡ଼ିଦେଲା ।

ଇଲ୍ଲିସକୁ କିଛି ବୁଦ୍ଧି ଦେଖାଗଲା ନାହିଁ । ସେ ସ୍ଥିର କଲା—ରାଜାଙ୍କୁ ଜଣାଇବା ଛଡ଼ା ଅନ୍ୟ ଉପାୟ ନାହିଁ ।

ସେ ଜୀବନବିକଳରେ ରାଜାଙ୍କ ପାଖକୁ ଯାଇ ଜଣାଇଲା, "ମହାରାଜ ! ମୁଁ କିଛି ଅନ୍ୟାୟ କରି ନାହିଁ । ମୋର ଧନସମ୍ପତ୍ତି ଏପରି ବାଣ୍ଟି ଦେଉଛନ୍ତି କାହିଁକି ?" ରାଜା କହିଲେ, "ଅଳ୍ପ ସମୟ ପୂର୍ବେ ତୁମେ ନିଜେ ଆସି କହିଗଲ ଯେ ତୁମେ ନିଜର ସବୁ ଧନ ଦାନ କରିଦେବ । ସେହି କଥା ମଧ୍ୟ ସହରରେ ଘୋଷଣା କରାଇଲ । ପ୍ରଥମେ ତୁମେ ଅବଶ୍ୟ ମୋତେ ସେହି ଧନ ଦେବାକୁ ଚାହିଁଥିଲ; କିନ୍ତୁ ମୁଁ ମନା କରିବାରୁ ତୁମେ ଦାନ କରିବ ବୋଲି କହିଗଲ । ଏବେ ଏ କଅଣ କହୁଛ ?"

ଇଲ୍ଲିସ କହିଲା, "ନା, ମହାରାଜ ! ମୁଁ ଏଥିପୂର୍ବରୁ ଆପଣଙ୍କ ପାଖକୁ ଆସିନାହିଁ କି ଏପରି କିଛି କହିନାହିଁ । ଶ୍ରୀହଜୁର ଜାଣନ୍ତି, ମୁଁ କେଡ଼େ କୃପଣ । ମୁଁ କେବେହେଲେ ଛୁଞ୍ଚିମୁନରେ ତେଲ ଟୋପାଏ ସୁଦ୍ଧା କାହାକୁ ଦେଇନାହିଁ । ମୁଁ କି ମୋର ସର୍ବସ୍ୱ ଦାନ କରିଦେବାକୁ କହନ୍ତି ? ନିଶ୍ଚୟ ଅନ୍ୟ କେହି ଜଣେ ଆପଣଙ୍କୁ ଏପରି କହି ମୋର ସମ୍ପତ୍ତି ନଷ୍ଟ କରିଦେଉଛି । ତାକୁ ଡକାଇ ବୁଝନ୍ତୁ । ମୋତେ ରକ୍ଷା କରନ୍ତୁ ।"

ରାଜା ଇଲ୍ଲିସର ଘରକୁ ଜଣେ କର୍ମଚାରୀ ପଠାଇ ଇଲ୍ଲିସ-ରୂପଧାରୀ ଶକ୍ରଙ୍କୁ ଡକାଇ ଆଣିଲେ । ଦୁଇ ଇଲ୍ଲିସଙ୍କର ରୂପ

Digitized by srujanika@gmail.com

ଠିକ୍ ଏକାପରି ହୋଇଥିବାରୁ ରାଜା ତଥା ତାଙ୍କର ମନ୍ତ୍ରୀ ପ୍ରଭୃତି ବିସ୍ମିତ ହୋଇଗଲେ ଏବଂ ପ୍ରକୃତ ଇଲ୍ଲିସ କିଏ ତାହା ସ୍ଥିର କରି ପାରିଲେ ନାହିଁ । କୃପଣ ଇଲ୍ଲିସ କହିଲା, "ମହାରାଜ, ମୁଁ ହେଉଛି ଶ୍ରେଷ୍ଠୀ ଇଲ୍ଲିସ । ଏ ଲୋକଟା କିଏ ?" ଶକ୍ର ମଧ୍ୟ ଠିକ୍ ସେହିପରି କହିଲେ ।

ରାଜା କହିଲେ, "ତୁମ ଦୁହିଙ୍କ ମଧ୍ୟରୁ କିଏ ପ୍ରକୃତ ଇଲ୍ଲିସ ମୁଁ ସ୍ଥିର କରି ପାରୁନାହିଁ । ହୁଏତ ଇଲ୍ଲିସଙ୍କ ପତ୍ନୀ ଓ ସନ୍ତାନ-ମାନେ ପ୍ରକୃତ ଇଲ୍ଲିସକୁ ଚିହ୍ନି ପାରିବେ ।" ସେମାନଙ୍କୁ ଡକାଗଲା । ଇଲ୍ଲିସପତ୍ନୀ ଦୁହିଙ୍କୁ ଖୁବ୍ ନିରୀକ୍ଷଣ କରି ଶେଷରେ ଶକ୍ରଙ୍କୁ ନିଜର ପତି ବୋଲି କହିଲା । ଇଲ୍ଲିସର ପୁଅଝିଅ ଓ ଦାସଦାସୀ-ମାନେ ମଧ୍ୟ ସେହି ଶକ୍ରଙ୍କୁ ପ୍ରକୃତ ଇଲ୍ଲିସ ବୋଲି କହିଲେ ।

ଏହି ସମୟରେ ଇଲ୍ଲିସର ମନେ ପଡ଼ିଗଲା ଯେ ତାର ମୁଣ୍ଡବାଳ ଭିତରେ ଗୋଟିଏ ଋତୁଡ଼ ଅଛି । ଭଣ୍ଡାରି ଛଡ଼ା ଅନ୍ୟ କେହି ସେ କଥା ଜାଣନ୍ତି ନାହିଁ । ତେଣୁ ସେ କହିଲା, "ମହାରାଜ, ଆମ ଭଣ୍ଡାରିକୁ ଡକାଯାଉ । ସେ ଆମ ଦୁହିଙ୍କୁ ଦେଖି ପ୍ରକୃତ ଇଲ୍ଲିସ କିଏ ଚିହ୍ନାଇ ଦେଇ ପାରିବ ।" ରାଜା ଭଣ୍ଡାରିକୁ ଡକାଇ ପଠାଇଲେ । ସେ କହିଲା, "ମହାରାଜ ! ଦୁହିଙ୍କର ମୁଣ୍ଡର ବାଳ ପରୀକ୍ଷା କଲେ ମୁଁ ପ୍ରକୃତ ଇଲ୍ଲିସ କିଏ କହି ପାରିବ ।" ଶକ୍ର ମଧ୍ୟ ନିଜ ବାଳ ଭିତରେ ଠିକ୍ ସେହିପରି ଗୋଟିଏ ଋତୁଡ଼ କରି ଦେଇଥିଲେ । ତେଣୁ ଭଣ୍ଡାରି ମଧ୍ୟ ପ୍ରକୃତ ଇଲ୍ଲିସ କିଏ ସ୍ଥିର କରି ପାରିଲା ନାହିଁ ।

କୃପଣ ଇଲ୍ଲିସର ଶେଷ ଭରସା ଥିଲା ଯେ ଭଣ୍ଡାରି ତାକୁ ଚିହ୍ନି ପାରିବ; କିନ୍ତୁ ତାହା ମଧ୍ୟ ହେଲା ନାହିଁ । ତେଣୁ ସେ

Digitized by srujanika@gmail.com

ଦେହରେ ପ୍ରହାର ସହ୍ୱ ସମସ୍ତ ଧନ ହରାଇ ହତାଶାରେ ଅଚେତନ ହୋଇପଡ଼ିଲା ।

ଲୋକେ ଇଲ୍ଲିସର ମୁହଁରେ ପାଣି ସିଞ୍ଚିବାରୁ ତାର ଚେତା ଫେରିଆସିଲା । ବହୁ କଷ୍ଟରେ ସେ ଉଠି ଛିଡ଼ାହେଲା ।

ତହୁଁ ଶକ୍ର ଶୂନ୍ୟକୁ ଉଠିଯାଇ କହିଲେ, "ହେ ରାଜା, ମୁଁ ଇଲ୍ଲିସ ନୁହେଁ । ମୁଁ ତାର ସ୍ୱର୍ଗତ ପିତା । ଏବେ ସ୍ୱର୍ଗରାଜ୍ୟରେ ଦେବରାଜ ଶକ୍ର ହୋଇଅଛି । ତାକୁ ଶିକ୍ଷା ଦେବା ପାଇଁ ତାର ରୂପ ଧରି ପୃଥିବୀକୁ ଆସିଥିଲି ।"

ଇଲ୍ଲିସକୁ ସମ୍ବୋଧନ କରି ଶକ୍ର କହିଲେ, "ହେ ଇଲ୍ଲିସ, ମୁଁ ଏସବୁ ଧନ ଅର୍ଜନ କରିଥିଲି; ତୁ ଅର୍ଜିନାହୁଁ । ତୁ ମୋର ପୁତ୍ର ହୋଇଥିବାରୁ ସେ ଧନର ଅଧିକାରୀ ହୋଇଅଛୁ । ମୁଁ ପୃଥିବୀରେ ଥିଲାବେଳେ ଦରିଦ୍ରମାନଙ୍କୁ ଦାନ କରିଥିବାରୁ ଏବେ ସ୍ୱର୍ଗରେ ଦେବରାଜ ଶକ୍ର ହୋଇ ସ୍ୱର୍ଗସୁଖ ଅନୁଭବ କରୁଅଛି । କିନ୍ତୁ ତୁ କୃପଣ ହୋଇ ମୋର ଅନ୍ନସତ୍ର ପ୍ରଭୃତି ଦାତବ୍ୟ ଅନୁଷ୍ଠାନକୁ ବନ୍ଦ କରି ଦେଇଅଛୁ । ସେ ଧନଦ୍ୱାରା ତୋର କିଛି ଉପକାର ହୋଇନାହିଁ ବା ଜଗତରେ ଅନ୍ୟ କାହାର କିଛି ଉପକାର ହୋଇନାହିଁ । ତୁ ଯଦି ଦାନ-ଧର୍ମ କରୁ ଓ ସତ୍‌କାର୍ଯ୍ୟରେ ଧନବ୍ୟୟ କରୁ ତେବେ ତୋର ପୁଣ୍ୟ ହେବ ଓ ମୃତ୍ୟୁପରେ ମଧ୍ୟ ତୋର ସଦ୍‌ଗତି ହେବ । ନୋହିଲେ ମୁଁ ତୋର ଧ୍ୱଂସ ସାଧନ କରିବି ।"

ଏହା କହି ଶକ୍ର ଅନ୍ତର୍ହିତ ହୋଇଗଲେ ।

ସେହି ଦିନଠାରୁ ଇଲ୍ଲିସର ଜୀବନରେ ପରିବର୍ତ୍ତନ ଘଟିଲା । ସେ ଦାନ-ଧର୍ମରେ ନିଜର ଧନ ବ୍ୟୟ କରିବାକୁ ଲାଗିଲା । ***

Digitized by srujanika@gmail.com

# ବକ ଜାତକ

ବନ ମଧ୍ୟରେ ଗୋଟିଏ ପୁଷ୍କରଣୀ ଥିଲା । ପୁଷ୍କରଣୀଟିର ଜଳ ନିର୍ମଳ ଓ ଏଥିରେ ପଦ୍ମ ପୁରିଥିବାରୁ ଏହା ଅତି ସୁନ୍ଦର ଦେଖାଯାଉଥିଲା । ଏହାର କୂଳରେ ଗୋଟିଏ ବଟବୃକ୍ଷ ଥିଲା । ଏକ ସମୟରେ ବୋଧିସତ୍ତ୍ୱ ଏହି ବୃକ୍ଷର ଦେବତାରୂପେ ଜନ୍ମଗ୍ରହଣ କରିଥିଲେ ।

ଗ୍ରୀଷ୍ମ ଋତୁ ଆସିବାରୁ ପୁଷ୍କରିଣୀର ଜଳ ଶୁଖିଆସିଲା । ଅଳ୍ପ ଜଳରେ ମତ୍ସ୍ୟମାନେ ବିକଳ ହେବାକୁ ଲାଗିଲେ । ଗୋଟିଏ ବକ ମତ୍ସ୍ୟମାନଙ୍କୁ ଦେଖି ଭାବିଲା, "କୌଶଳ କରି ଏମାନଙ୍କୁ ଖାଇବି । ଅନେକ ଦିନ ପର୍ଯ୍ୟନ୍ତ ମୋର ଆଉ ଆହାରର ଚିନ୍ତା ରହିବ ନାହିଁ ।"

ସେ ପୁଷ୍କରଣୀ ତୀରରେ ନୀରବରେ ବସିରହିଲା । ମତ୍ସ୍ୟମାନେ ଦେଖିଲେ ଯେ ବକ ଧ୍ୟାନମଗ୍ନ ହେଲା ପରି ବସିଛି; ସେମାନଙ୍କୁ ଧରିବା ପାଇଁ କୌଣସି ଉଦ୍ୟମ କରୁନାହିଁ । ଏହା ଦେଖି ସେମାନେ ବିସ୍ମିତ ହୋଇ ବକକୁ ପଚାରିଲେ, "ଆଜି ତୁମେ ଏପରି ଚିନ୍ତାମଗ୍ନ ହୋଇ ଏଠାରେ ବସିଛ କାହିଁକି ? ଆହାର ସଂଗ୍ରହର ଚେଷ୍ଟା କରୁନାହଁ ?" ବକ କହିଲା, "ମୁଁ ତୁମମାନଙ୍କ ବିଷୟ ଚିନ୍ତା କରୁଛି । ଦେଖୁଥିବ, ଏହି ପୁଷ୍କରଣୀର ଜଳ ଶୁଖି-ଆସିଲାଣି । ପ୍ରଚଣ୍ଡ ରୌଦ୍ରତାପରେ ଅଳ୍ପଦିନ ପରେ ସମସ୍ତ ଜଳ ଶୁଖିଯିବ ଓ ତୁମେମାନେ ମୃତ୍ୟୁମୁଖରେ ପଡ଼ିବ । ଏହା ହିଁ ମୋର ଚିନ୍ତାର କାରଣ ।"

Digitized by srujanika@gmail.com

ମତ୍ସ୍ୟମାନେ କହିଲେ, "ତୁମ କଥା ସତ୍ୟ; କିନ୍ତୁ ଆମମାନଙ୍କର ଜୀବନରକ୍ଷାର କଅଣ କିଛି ଉପାୟ ନାହିଁ ?" ବକ କହିଲା, "ମୁଁ ଗୋଟିଏ ଉପାୟ ଦେଖିପାରୁଅଛି । ଏଠାରୁ କିଛି ଦୂରରେ ଗୋଟିଏ ବୃହତ୍ ଜଳାଶୟ ଅଛି । ସେଥିରେ ବର୍ତ୍ତମାନ ପ୍ରଚୁର ଜଳ ଅଛି । ପ୍ରଚଣ୍ଡ ଗ୍ରୀଷ୍ମ ଋତୁରେ ମଧ୍ୟ ତାହାର ଜଳ ଶୁଖିଯାଏ ନାହିଁ । ମୋର ମତରେ ତୁମେମାନେ ସେହି ପୁଷ୍କରିଣୀକୁ ଚାଲିଯିବା ଉଚିତ ।" ମତ୍ସ୍ୟମାନେ କହିଲେ, "କିନ୍ତୁ ଆମ ପକ୍ଷରେ ଅନ୍ୟତ୍ର ଚାଲିଯିବା ଅସମ୍ଭବ । ତେଣୁ ସେ ପୁଷ୍କରିଣୀରେ ଯେତେ ଜଳ ଥିଲେ ସୁଦ୍ଧା ଆମର ଉପକାରରେ ଆସିବ ନାହିଁ ।" ତହୁଁ ବକ କହିଲା, "ମୁଁ ସେ ବିଷୟ ମଧ୍ୟ ଚିନ୍ତା କରିଛି । ତୁମେମାନେ ଇଚ୍ଛା କଲେ ମୁଁ ଥଣ୍ଟରେ ଗୋଟିଏ ଗୋଟିଏ କରି ନେଇ ସେ ପୁଷ୍କରିଣୀରେ ଛାଡ଼ିଦେଇ ଆସିବି ।"

କେତୋଟି ମତ୍ସ୍ୟ ବକର କଥାରେ ସନ୍ଦେହ କରି କହିଲେ, "ଆଜଯାଏ କୌଣସି ବକ ଆମ ପାଇଁ ଏତେ ଚିନ୍ତା କରି ନଥିଲେ । ତୁମେ ଯେ ଆମକୁ ନ ଖାଇବ ସେ କଥା କିଏ କହିପାରିବ ? ପ୍ରକୃତରେ ଅନ୍ୟ ଜଳପୂର୍ଣ୍ଣ ପୁଷ୍କରିଣୀ ଅଛି କି ନା କିଏ ଜାଣେ ?" ବକ କହିଲା, "ତୁମମାନଙ୍କର ସନ୍ଦେହ ଯଥାର୍ଥ; କିନ୍ତୁ ସଂସାରରେ ରହିବାକୁ ହେଲେ ଅନ୍ୟକୁ ବିଶ୍ୱାସ କରିବାକୁ ହୋଇଥାଏ । ଆଚ୍ଛା, ତୁମ ଭିତରୁ ମୁଁ ଜଣେ କାହାକୁ ନେଇ ସେ ପୁଷ୍କରିଣୀ ଦେଖାଇ ଦେବି ।"

ମାଛମାନଙ୍କ ଭିତରେ ଗୋଟିଏ ଖୁବ୍ ବଡ଼ ବଳବାନ୍ ମାଛ ଥିଲା । ତାହାର ଗୋଟିଏ ଆଖି ଫୁଟିଯାଇଥିବାରୁ ତାକୁ ଅନ୍ୟମାନେ ଏକାକ୍ଷ କହୁଥିଲେ । ମାଛମାନେ ବିଚାର କଲେ,

Digitized by srujanika@gmail.com

"ଏହି ଏକାକ୍ଷକୁ ନେଇ ବକ ଯାଉ । ଯଦି ବକର ଉଦ୍ଦେଶ୍ୟ ମନ୍ଦ ଥାଏ, ତେବେ ଏକାକ୍ଷ ମଧ୍ଯ ତାକୁ ଉଚିତ ଶାସ୍ତି ଦେଇପାରିବ ।"

ମାଛମାନଙ୍କ ପ୍ରସ୍ତାବ ଅନୁସାରେ ବକ ତାର ଥଣ୍ଟରେ ଏକାକ୍ଷକୁ ଧରି ଉଡ଼ିଗଲା । ସେ ଅନ୍ୟ ଏକ ବୃହତ୍ ପୁଷ୍କରଣୀର ତଟଦେଶରେ ତାହାକୁ ଛାଡ଼ିଦେଲା । ଏକାକ୍ଷ ଦେଖିଲା, ବକ ଯାହା କହୁଥିଲା, ତାହା ସତ୍ୟ । ପୁଷ୍କରିଣୀରେ ପ୍ରଚୁର ଜଳ ଅଛି ଓ ନିକଟରେ ତାହା ଶୁଖିଯିବାର ଆଶଙ୍କା ନାହିଁ । ଏକାକ୍ଷ ଏହି ଜଳରେ କିଛି ସମୟ ସନ୍ତରଣ କରି ସୁଖ ଅନୁଭବ କଲା । ତତ୍ପରେ ବକ ଏକାକ୍ଷକୁ ଥଣ୍ଟରେ ଧରି ପୁଣି ପୂର୍ବର କ୍ଷୁଦ୍ର ପୁଷ୍କରଣୀରେ ଛାଡ଼ିଦେଲା ।

ଅନ୍ୟ ମତ୍ସ୍ୟମାନେ ଏକାକ୍ଷକୁ ବେଢ଼ିଯାଇ ସମ୍ବାଦ ପଚାରିଲେ । ବକର କଥା ସତ୍ୟ ଓ ଅନ୍ୟ ପୁଷ୍କରଣୀକୁ ଗଲେ ସେମାନେ ସୁଖରେ ରହିପାରିବେ ବୋଲି ଏକାକ୍ଷ ଜଣାଇ-ଦେଲା ।

ଏବେ ସେମାନେ ଶୀଘ୍ର ଏହି ନୂତନ ପୁଷ୍କରଣୀକୁ ଯିବା ପାଇଁ ଅସ୍ଥିର ହୋଇ ପଡ଼ିଲେ । ବକ ପରି ସେମାନଙ୍କର ଉପକାରୀ ବନ୍ଧୁ କେହି ନାହିଁ ବୋଲି ସେମାନେ ମନେକଲେ । ପ୍ରତ୍ୟେକ ମାଛ ଆଗ ଯିବାପାଇଁ ବାହାରିବାରୁ ବକ କହିଲା, "ମୁଁ ଥରକେ ଗୋଟିକରୁ ଅଧିକ ନେଇ ପାରିବ ନାହିଁ । ଅଧୀର ହେବା ଉଚିତ ନୁହେଁ । ଯେତେ ଦିନ ଲାଗୁ ପଛକେ, ମୁଁ ସମସ୍ତଙ୍କୁ ସେହି ପୁଷ୍କରଣୀକୁ ନେଇଯିବି, ଏଥିରେ ସନ୍ଦେହ ନାହିଁ ।"

ପ୍ରଥମେ ଏକାକ୍ଷ ଯିବାକୁ ବାହାରିଲା । ସେ ତାହାକୁ ଥଣ୍ଟରେ ଧରି ନୂତନ ପୁଷ୍କରଣୀର ନିକଟରେ ପହଞ୍ଚିଲା । କିନ୍ତୁ ତାକୁ ଜଳରେ

Digitized by srujanika@gmail.com

ନ ପକାଇ ଅତି ଉଚ୍ଚରୁ ଗୋଟିଏ ପ୍ରସ୍ତର ଉପରେ ପକାଇଦେଲା । ଏହା ଫଳରେ ଏକାକ୍ଷର ମୃତ୍ୟୁ ହେଲା । ବକ ନିଶ୍ଚିନ୍ତରେ ତାହାକୁ ଖାଇ ଉଦର ପୂର୍ତ୍ତିକଲା । କିଛି ସମୟ ପରେ ସେ ଫେରିଆସି ମତ୍ସ୍ୟମାନଙ୍କୁ କହିଲା, "ଏକାକ୍ଷକୁ ଛାଡ଼ି ଆସିଲି । ଏବେ ଆଉ ଜଣେ ଆସ ।"

ଏହିପରି ସେ ମତ୍ସ୍ୟମାନଙ୍କୁ ନେଇ ଗୋଟି ଗୋଟି କରି ପଥର ଉପରେ ଛେଚି ଖାଇବାକୁ ଲାଗିଲା । କ୍ରମେ ପୁଷ୍କରିଣୀଟି ମତ୍ସ୍ୟଶୂନ୍ୟ ହୋଇ ଆସିଲା । ଶେଷରେ ଗୋଟିଏ କର୍କଟ କହିଲା, "ତୁମେ ଏତେଗୁଡ଼ିଏ ମତ୍ସ୍ୟଙ୍କର ଜୀବନ ରକ୍ଷାକଲ । ମୁଁ ମଧ୍ୟ ଜଳଚର ପ୍ରାଣୀ । ପୁଷ୍କରିଣୀ ଶୁଖିଗଲେ ମୋର ମୃତ୍ୟୁ ହେବ । ଦୟା କରି ମୋତେ ସେହି ପୁଷ୍କରିଣୀକୁ ନେଇଯାଅ । ବକ କର୍କଟ ମାଂସର ସ୍ୱାଦୁଲୋଭରେ ଏଥିରେ ସ୍ୱୀକୃତ ହେଲା । ତହୁଁ କର୍କଟ କହିଲା, "ତୁମେ ବଡ଼ ଦୟାଳୁ । କିନ୍ତୁ ମୋତେ କିପରି ନେଇ-ଯିବ ?"

ବକ ଉତ୍ତର କଲା, "ନେବାରେ ଅସୁବିଧା କଅଣ ? ମାଛମାନଙ୍କୁ ଯେପରି ଥଣ୍ଟରେ ଧରି ନେଉଥିଲି, ତୁମକୁ ସେହିପରି ଧରି ନେଇଯିବି ।" କର୍କଟ କହିଲା,"ମତ୍ସ୍ୟମାନଙ୍କର ଚର୍ମ କୋମଳ; ତେଣୁ ସେମାନଙ୍କୁ ଥଣ୍ଟରେ ଧରି ନେଲେ ଖସିପଡ଼ିବାର ଭୟ ନ ଥାଏ; କିନ୍ତୁ ମୋର ଦେହ କଠିନ ଓ ମସୃଣ । ଥଣ୍ଟରେ ଯେତେ ଦୃଢ଼ଭାବରେ ଧରିଥିଲେ ସୁଦ୍ଧା ଯେକୌଣସି ମୁହୂର୍ତ୍ତରେ ମୋର ଖସିପଡ଼ିବାର ଆଶଙ୍କା ଅଛି । ତାହାହେଲେ ତୁମର ପରିଶ୍ରମ ବୃଥା ହେବ, ମୋର ପ୍ରାଣ ଯିବ ଓ ମୋର ମରଣ ପାଇଁ ତୁମେ ପାପଭାଗୀ ହେବ । ମୁଁ ଅନ୍ୟ ଗୋଟିଏ ଉପାୟ କହୁଛି । ମୁଁ ତୁମ ପିଠି

Digitized by srujanika@gmail.com

ଉପରେ ବସି ମୋର ଦୁଇ ଗୋଡ଼ରେ ତୁମ ଗଳାକୁ ଧରିବ । ତାହାହେଲେ ଆଉ ମୋର ପଡ଼ିଯିବାର ଭୟ ରହିବ ନାହିଁ ।”

ବକ ଏଥିରେ କୌଣସି ସନ୍ଦେହ ନ କରି କର୍କଟକୁ ପିଠି ଉପରେ ବସାଇଲା ଓ ସେ ବକର ଗଳାକୁ ଦୁଇ ଗୋଡ଼ରେ ଧରିଲା । ବକ ତାହାକୁ ନୂତନ ପୁଷ୍କରିଣୀ ନିକଟକୁ ନେଇ ସେହି ବୃକ୍ଷ ଉପରକୁ ଉଡ଼ିଆସିଲା । କର୍କଟ କହିଲା, “ମୋତେ ପୁଷ୍କରିଣୀରେ ନ ଛାଡ଼ି ଏ ଆଡ଼କୁ ଆଣିଲ କାହିଁକି ?”

ବକ କହିଲା, “ରେ ମୂର୍ଖ ! ତଳକୁ ଚାହାଁ; ଯେଉଁ ମତ୍ସ୍ୟ-ମାନଙ୍କୁ ମୁଁ ଆଣିଥିଲି, ସେମାନଙ୍କ ମାଂସ ମୋର ପେଟରେ; କେବଳ କଣ୍ଟା ପଡ଼ିଛି । ତୁ ମଧ୍ୟ ସେହିପରି ମୋହର ଆହାର ହେବୁ ।”

କର୍କଟ ବକର ମନ୍ଦ ଉଦ୍ଦେଶ୍ୟ ବୁଝିପାରି ତାର ସଣ୍ଢୁଆଶି ପରି ଗୋଡ଼ର ଅଗ୍ରଭାଗରେ ବକର ଗଳାକୁ ଚିପିଧରିଲା । ବକ ନିଜର ବିପଦ ବୁଝିପାରି କହିଲା, “ମୁଁ ତୁମକୁ ମାରିବି ନାହିଁ । ମୋତେ ଛାଡ଼ିଦିଅ ।”

କର୍କଟ କହିଲା, “ତାହାହେଲେ ମୋତେ ପୁଷ୍କରିଣୀକୁ ନେଇ-ଯାଅ ।” ବକ ବାଧ୍ୟ ହୋଇ କର୍କଟକୁ ନେଇ ପୁଷ୍କରିଣୀ ତଟରେ ବସିଲାମାତ୍ରେ କର୍କଟ ତାର ଗଳାକୁ ଚିପି ତାକୁ ମାରିଦେଲା ।

ବୃକ୍ଷଦେବତାରୂପୀ ବୋଧିସତ୍ତ୍ୱ ବୃକ୍ଷରେ ରହି ଏ ସମସ୍ତ ଘଟଣା ଦେଖୁଥିଲେ । ସେ କହିଉଠିଲେ—“ପ୍ରତାରଣାଦ୍ୱାରା ଲାଭ ହୁଏ ନାହିଁ । ଯିଏ ଅନ୍ୟକୁ ପ୍ରତାରଣା କରିବାକୁ ଯାଏ, ସେ ହିଁ ନିଜେ ନଷ୍ଟହୁଏ ଅନ୍ୟଦ୍ୱାରା ପ୍ରତାରିତ ହୁଏ ।”

•••

Digitized by srujanika@gmail.com

# ଆମ୍ର ଜାତକ

ପ୍ରାଚୀନ କାଳରେ ବ୍ରହ୍ମଦତ୍ତ ବାରଣସୀରେ ରାଜତ୍ୱ କରୁଥିଲେ । ଏକଦା ନଗରୀରେ ମହାମାରୀ ଦେଖାଦେଲା । ରାଜାଙ୍କର ପୁରୋହିତଙ୍କ ପରିବାରର ସମସ୍ତେ ଏହି ରୋଗରେ ମୃତ୍ୟୁମୁଖରେ ପଡ଼ିଲେ । କେବଳ ତାଙ୍କର ଗୋଟିଏ ପୁତ୍ର ନଗରରୁ ପଳାଇବାରୁ ତାର ଜୀବନରକ୍ଷା ହେଲା । ସେ ତକ୍ଷଶିଳାକୁ ଯାଇ ସେଠାରେ ଜଣେ ବିଖ୍ୟାତ ପଣ୍ଡିତଙ୍କର ଶିଷ୍ୟତ୍ୱ ଗ୍ରହଣ କଲା । କେତେକ ବର୍ଷ ମଧ୍ୟରେ ସେ ବେଦ, ପୁରାଣ ପ୍ରଭୃତି ଶାସ୍ତ୍ରରେ ପାଣ୍ଡିତ୍ୟ ଅର୍ଜନ କଲା । ବିଦ୍ୟାଶିକ୍ଷା ଶେଷ କରି ଗୁରୁଙ୍କର ଅନୁମତି ଗ୍ରହଣ କରି ସେ ଦେଶଭ୍ରମଣରେ ବାହାରିଲା । ଏହିପରି ଭ୍ରମଣ କରୁ କରୁ ସେ ଗୋଟିଏ ଗ୍ରାମରେ ପହଞ୍ଚିଲା । ଏହି ଗ୍ରାମରେ କେବଳ ନୀଚ ଚଣ୍ଡାଳମାନେ ବାସ କରୁଥିଲେ ।

ସେହି ସମୟରେ ବୋଧିସତ୍ତ୍ୱ ଏକ ଚଣ୍ଡାଳରୂପେ ଏହି ଗ୍ରାମରେ ବାସ କରୁଥିଲେ । ଚଣ୍ଡାଳ ହେଲେହେଁ ତାଙ୍କର ଜୀବନ ଅତି ପବିତ୍ର ଥିଲା । ସେ ଅନେକ ଶାସ୍ତ୍ର ପଢ଼ିଥିଲେ ଓ ସକଳ ବିଷୟରେ ତାଙ୍କର ଅଗାଧ ଜ୍ଞାନ ଥିଲା । ଗ୍ରାମବାସୀମାନେ ତାଙ୍କୁ ଦେବତା ପରି ମାନୁଥିଲେ ।

ସେ ଗୋଟିଏ ଅଦ୍ଭୁତ ମନ୍ତ୍ର ଜାଣିଥିଲେ । ସେହି ମନ୍ତ୍ରବଳରେ ବର୍ଷର ଯେକୌଣସି ସମୟରେ ସେ ଆମ୍ବଗଛରୁ ଫଳ ଉତ୍ପାଦନ କରିପାରୁଥିଲେ । ପ୍ରତିଦିନ ସେ ଗୋଟିଏ ନଗୀ ଓ ଗୋଟିଏ ଡାଲି ଧରି ନିକଟସ୍ଥ ବଣକୁ ଯାଉଥିଲେ । କୌଣସି ଆମ୍ବଗଛଠାରୁ

Digitized by srujanika@gmail.com

ସାତ ପାଦ ଦୂରରେ ଛିଡ଼ାହୋଇ ସେ ମନ୍ତ୍ରପାଠ କରୁଥିଲେ ଓ ତତ୍ପରେ ଅଞ୍ଜଳାଏ ପାଣି ଆଣି ଗଛ ଉପରକୁ ପକାଇ ଦେଉଥିଲେ । ସଙ୍ଗେ ସଙ୍ଗେ ଗଛରେ ବଉଳ ହେଉଥିଲା । କ୍ରମେ କ୍ରମେ ବଉଳ ଆମ୍ବରେ ପରିଣତ ହୋଇ ପାଚିଯାଉଥିଲା । ସେ ସେଗୁଡ଼ିକୁ ତୋଳି ଡାଲାରେ ଘରକୁ ଆଣୁଥିଲେ । ସେଥିରୁ କିଛି ନିଜେ ଖାଉଥିଲେ, କିଛି ନିଜର ସ୍ତ୍ରୀ ଓ ପୁତ୍ରଙ୍କୁ ଦେଉଥିଲେ; ଅବଶିଷ୍ଟ ଆମ୍ବ ବିକ୍ରୟ କରି ସେ ପରିବାରର ବ୍ୟୟ ନିର୍ବାହ କରୁଥିଲେ । ଏହି ଆମ୍ବ ଯେ କେବଳ ଅସମୟରେ ମିଳୁଥିଲା ତାହା ନୁହେଁ; ଏହାର ସୁଗନ୍ଧ ଓ ସ୍ୱାଦୁ ମଧ୍ୟ ସ୍ୱର୍ଗୀୟ ଥିଲା ।

ବ୍ରାହ୍ମଣ ଯୁବକ ଏହି ଚଣ୍ଡାଳ ଗ୍ରାମରେ ପହଞ୍ଚି ଦେଖିଲା ଯେ ଜଣେ ସୁନ୍ଦର ପାଚିଲା ଆମ୍ବ ବିକ୍ରୟ କରୁଛନ୍ତି । ଏ ସମୟରେ ଆମ୍ବ ହୁଏ ନାହିଁ । ତେଣୁ ସେ ଚିନ୍ତା କଲା, "ଏ ଋତୁରେ ଆମ୍ବ ଦେଖାଯାଏ ନାହିଁ । ଏ ଲୋକଟି ଏତେ ସୁନ୍ଦର ପାଚିଲା ଆମ୍ବ କାହୁଁ ପାଇଲା ? ନିଶ୍ଚୟ କୌଣସି ମନ୍ତ୍ରର ପ୍ରଭାବରେ ଏହି ଆମ୍ବ ଆସିଅଛି । ଯେଉଁ ଲୋକଟି ଆମ୍ବ ବିକ୍ରୟ କରୁଅଛି, ସେ ମନ୍ତ୍ର ଜାଣିଥିବ । ମୁଁ କୌଶଳ କରି ତାହାଠାରୁ ମନ୍ତ୍ରଟି ଶିଖିପାରିଲେ ମୋର କୌଣସି ଅଭାବ ରହିବ ନାହିଁ । ମନ୍ତ୍ରଟି ଯେ ଅମୂଲ୍ୟ, ଏଥିରେ ସନ୍ଦେହ ନାହିଁ । ଏହାକୁ ପାଇବା କଷ୍ଟକର ହୋଇପାରେ; କିନ୍ତୁ ସବୁ କଷ୍ଟ ସହି ମୁଁ କୌଣସିମତେ ମନ୍ତ୍ରଟିକୁ ଆୟତ୍ତ କରିବି ।"

ଏହିପରି ମନେ ମନେ ସ୍ଥିର କରି ସେହି ବ୍ରାହ୍ମଣ ଯୁବକ କିଛିଦିନ ଚଣ୍ଡାଳ ଗ୍ରାମରେ ରହିଲା ଓ ଚଣ୍ଡାଳରୂପୀ ବୋଧିସତ୍ତ୍ୱଙ୍କର କାର୍ଯ୍ୟକଳାପ ଲକ୍ଷ୍ୟ କଲା । କିପରି ସେ ମନ୍ତ୍ରଦ୍ୱାରା ଆମ୍ବ ପାଉଛନ୍ତି, ଜାଣିସାରିବା ପରେ ଦିନେ ଚଣ୍ଡାଳଙ୍କର ଅନୁପସ୍ଥିତବେଳେ ତାଙ୍କ

Digitized by srujanika@gmail.com

ଗୃହରେ ଉପସ୍ଥିତ ହେଲା ଓ ତାଙ୍କ ପତ୍ନୀଙ୍କଠାରୁ ବୁଝିଲା ଯେ ସେ ବଣକୁ ଯାଇଅଛନ୍ତି । ତାଙ୍କର ଫେରିବା ପର୍ଯ୍ୟନ୍ତ ସେ ଅପେକ୍ଷା କରି ରହିଲା । ଗୃହକର୍ମରେ ସେ ସ୍ୱତଃ ତାଙ୍କୁ ସାହାଯ୍ୟ କଲା ଓ ତାଙ୍କର ସେବା କରି ଶିଷ୍ୟ ହେବାର ଇଚ୍ଛା ପ୍ରକାଶ କଲା ।

ଚଣ୍ଡାଳ ସିଦ୍ଧପୁରୁଷ ହୋଇଥିବାରୁ ସେ ବ୍ରାହ୍ମଣ ଯୁବକର ଉଦ୍ଦେଶ୍ୟ ଜାଣିପାରିଲେ । କିନ୍ତୁ ସେ ତାକୁ ପ୍ରତ୍ୟାଖ୍ୟାନ କରି ନ ଦେଇ ପାଖରେ ରଖିଲେ । ଯୁବକ ଚଣ୍ଡାଳଙ୍କ ପାଇଁ ବଣରୁ କାଠ ହାଣି ଦେଉଥିଲା, ନଦୀରୁ ଜଳ ଆଣୁଥିଲା, ରନ୍ଧନ କରୁଥିଲା; ଏପରିକି ତାଙ୍କର ପାଦସେବା ମଧ୍ୟ କରୁଥିଲା ।

ଦିନେ ଶୟନବେଳେ ଚଣ୍ଡାଳ ପାଦ ରଖିବାପାଇଁ କୌଣସି ଆସନ ଆଣିବାକୁ କହିଲେ । କିନ୍ତୁ ନ ମିଳିବାରୁ ବ୍ରାହ୍ମଣ ସାରାରାତି ନିଜ ଗୋଡ଼ ଉପରେ ତାଙ୍କ ପାଦଟି ରଖି ବସିରହିଲା । ତାହାର କାର୍ଯ୍ୟରେ ଚଣ୍ଡାଳପତ୍ନୀ ଅତି ସନ୍ତୁଷ୍ଟ ହୋଇଗଲେ । ସେ ସ୍ୱାମୀଙ୍କୁ କହିଲେ, "ବ୍ରାହ୍ମଣଟି ଆମର ଏତେ ସେବା କରୁଛି, ତାକୁ ଆମ୍ବ ପାଇବା ମନ୍ତ୍ରଟି ଶିଖାଇଦିଅ ।"

ଚଣ୍ଡାଳ କହିଲେ, "ସେ ଆମର ଖୁବ୍ ସେବା କରୁଛି ସତ; କିନ୍ତୁ ତାର ମନ ପବିତ୍ର ନୁହେଁ । ତାକୁ ମନ୍ତ୍ର ଶିଖାଇଦେଲେ ମଧ୍ୟ ସେ ତାକୁ ରଖିପାରିବ ନାହିଁ ।" ଶେଷରେ ପତ୍ନୀ କହିଲେ, "ତାକୁ ମନ୍ତ୍ରଟି ଦିଅ । ସେ ରଖି ନ ପାରିଲେ ଆମର ଦୋଷ ହେବ ନାହିଁ ।"

ପରିଶେଷରେ ଦିନେ ଚଣ୍ଡାଳ ବ୍ରାହ୍ମଣ ଯୁବକକୁ କହିଲେ, "ମୁଁ ତୁମକୁ ଏହି ଅଦ୍ଭୁତ ମନ୍ତ୍ରଟି ଶିକ୍ଷା ଦେବି । ଏହି ଅମୂଲ୍ୟ ମନ୍ତ୍ର-ବଳରେ ତୁମେ ବିପୁଳ ଧନ ଓ ଯଶ ଲାଭ କରିବ । କିନ୍ତୁ ଯଦି କେବେ ରାଜା ବା ତାଙ୍କ ମନ୍ତ୍ରୀ ତୁମକୁ ପଚାରନ୍ତି ଯେ ତୁମେ ଏହି

Digitized by srujanika@gmail.com

ମନ୍ତ୍ର କେଉଁ ଗୁରୁଠାରୁ ଶିଖିଛ, ତାହାହେଲେ ତୁମେ ମୋର ନାମ ପ୍ରକାଶ କରିଦେବ । ଯଦି ତୁମେ ଭାବ ଯେ ଗୋଟାଏ ଚଣ୍ଡାଳକୁ ଗୁରୁ ବୋଲି କହିବା ତୁମ ପକ୍ଷରେ ନିନ୍ଦାଜନକ ହେବ, ତେବେ ମନ୍ତ୍ରର ଆଉ ଶକ୍ତି ରହିବ ନାହିଁ ।"

ବ୍ରାହ୍ମଣ କହିଲା, "ମୁଁ ଆପଣଙ୍କ ନାମ ଲୁଚାଇବି କାହିଁକି ? ମିଥ୍ୟାରେ ଅନ୍ୟକୁ ଗୁରୁ ବୋଲି କହିବି ଅବା କାହିଁକି ? ମୁଁ ନିଶ୍ଚୟ ସତ୍ୟ କଥା କହିବି ।"

ମନ୍ତ୍ର ଶିଖିସାରିବା ପରେ ବ୍ରାହ୍ମଣ ବାରାଣସୀ ନଗରୀକୁ ଆସିଲା ଓ ମନ୍ତ୍ରଦ୍ୱାରା ଆମ୍ବ ବାହାରି କରି ଯଥେଷ୍ଟ ଧନ ଅର୍ଜନ କଲା ।

ଦିନେ ରଜାଙ୍କର ଜଣେ ଭୃତ୍ୟ ଗୋଟିଏ ଆମ୍ବ ନେଇ ରାଜାଙ୍କୁ ଦେଲା । ଅସମୟରେ ଫଳଟି ପାଇ ଓ ତାର ସ୍ୱାଦରେ ମୁଗ୍ଧ ହୋଇ ରାଜା ଭୃତ୍ୟକୁ ପଚାରିଲେ—"ଏ ଆମ୍ବ କେଉଁଠାରୁ ଆଣିଲୁ ?" ସେ ବ୍ରାହ୍ମଣର ନାମ କହିଲା । ରାଜା ବ୍ରାହ୍ମଣକୁ ଡକାଇ ପଚାରିଲେ, "ଏ ଋତୁରେ ଆମ୍ବ ହୁଏ ନାହିଁ । ତୁମେ କେଉଁଠାରୁ ଆମ୍ବ ପାଇଲ ? ପୁଣି ଏହାର ରୂପ, ଗନ୍ଧ ଓ ସ୍ୱାଦ ଏପରି ଯେ ଏହା ଭଳି ଆମ୍ବ ପୃଥିବୀରେ ଦେଖାଯାଏ ନାହିଁ । ସ୍ୱର୍ଗର ନନ୍ଦନକାନନରୁ କୌଣସି ଦେବତା ଦେଇଥିଲେ ପରି ବୋଧ ହେଉଛି ।"

ବ୍ରାହ୍ମଣ କହିଲା, "ମହାରାଜ ! ମୁଁ ଗୋଟିଏ ମନ୍ତ୍ର ଜାଣେ । ସେହି ମନ୍ତ୍ରବଳରେ ମୁଁ ଯେକୌଣସି ସମୟରେ ଏହିଭଳି ଆମ୍ବ ପାଇପାରୁଛି ।"

ରାଜାଙ୍କର କୌତୂହଳ ଜାତ ହେଲା । ସେ ମନ୍ତ୍ରର ଶକ୍ତି ସ୍ୱଚକ୍ଷୁରେ ଦେଖିବାର ଇଚ୍ଛା ପ୍ରକାଶ କଲେ । ରାଜାଙ୍କ ଉପବନରେ

Digitized by srujanika@gmail.com

ଏହି ପରୀକ୍ଷା କରାଯିବାର ସ୍ଥିର ହେଲା । ରାଜା, ରାଣୀ ଓ ଅନେକ ଉଚ୍ଚକର୍ମଚାରୀ ଆସନରେ ବସିଲେ । ବ୍ରାହ୍ମଣ ଗୋଟିଏ ଆମ୍ବଗଛ ମୂଳରୁ ସାତ ପାଦ ଦୂରରେ ଛିଡ଼ା ହୋଇ ମନ୍ତ୍ରପାଠ କଲା ଓ ତତ୍ପରେ ଆଞ୍ଜୁଳାଏ ଜଳ ନେଇ ଗଛ ଉପରକୁ ଫିଙ୍ଗିଦେଲା । ସଙ୍ଗେ ସଙ୍ଗେ ଗଛରେ ବଉଳ ଦେଖାଦେଲା । ଗୁହ୍ନି ଗୁହ୍ନି ବଉଳରୁ ଆମ୍ବକଷି ହେଲା ଓ ପରେ ପରେ ଆମ୍ବକଷି ବୃଦ୍ଧିପାଇ ପାଚିଲା ଆମ୍ବରେ ପରିଣତ ହେଲା । ଅନେକ ଆମ୍ବ ତୋଳି ସମସ୍ତେ ଖାଇ ତୃପ୍ତ ହେଲେ ।

ବ୍ରାହ୍ମଣର ଏହି ଅଦ୍ଭୁତ ଶକ୍ତି ଦେଖି ସମସ୍ତେ ତାର ପ୍ରଶଂସା କଲେ । ରାଜା ପ୍ରଚୁର ଧନରତ୍ନ ପୁରସ୍କାର ଦେଇ ବ୍ରାହ୍ମଣକୁ ପଚାରିଲେ, "ତୁମର ଗୁରୁ କିଏ ?"

ସେ ଭାବିଲା—ଚଣ୍ଡାଳଟାଏ ମୋର ଗୁରୁ ବୋଲି କହିଲେ ରାଜା ମୋତେ ଘୃଣା କରିବେ । ନିଜକୁ ମଧ୍ୟ ଅପମାନ ହେବ । ତେଣୁ ସେ କହିଲା, "ତକ୍ଷଶିଳାର ଜଣେ ପ୍ରସିଦ୍ଧ ବ୍ରାହ୍ମଣ ମୋର ଗୁରୁ ଓ ତାଙ୍କଠାରୁ ମୁଁ ଏହି ଅଦ୍ଭୁତ ମନ୍ତ୍ର ଶିଖିଛି ।"

ଏହି ଘଟଣାର କିଛିଦିନ ପରେ ରାଜାଙ୍କର ପୁଣି ଆମ୍ବ ଖାଇବାକୁ ଇଚ୍ଛା ହେଲା । ସେ ବ୍ରାହ୍ମଣକୁ ଆମ୍ବ ଆଣିବା ପାଇଁ କହିଲେ । ସେ ରାଜୋଦ୍ୟାନକୁ ଯାଇ ଗଛମୂଳରୁ ସାତ ପାଦ ଦୂରରେ ଛିଡ଼ାହୋଇ ମନ୍ତ୍ର ବୋଲିବାକୁ ବସିଲା; କିନ୍ତୁ ଯେତେ ଚେଷ୍ଟା କଲେ ସୁଦ୍ଧା ମନ୍ତ୍ର ମନେପଡ଼ିଲା ନାହିଁ । ଏଣେ ରାଜପରିବାର ଓ ରାଜକର୍ମଚାରୀ ସମସ୍ତେ ଅପେକ୍ଷା କରି ରହିଛନ୍ତି; କିନ୍ତୁ ଗଛରେ ଆମ୍ବର ଚିହ୍ନ ନାହିଁ । ବ୍ରାହ୍ମଣ ସ୍ତମ୍ଭୀଭୂତ ହୋଇ ରହିଲା । ରାଜା କହିଲେ—"ଏ କଅଣ ? ସେଦିନ ଦୁଇଘଡ଼ି ସମୟ ମଧ୍ୟରେ ଶହ

Digitized by srujanika@gmail.com

ଶହ ପାଚିଲା ଆମ୍ବ ଦେଇଥିଲ, ଆଜ ଏତେବେଳଯାଏ ଗୋଟାଏ ସୁଦ୍ଧା ଆମ୍ବ ଦେଖାନାହିଁ !”

ବ୍ରାହ୍ମଣ କ'ଣ କହିବ ସ୍ଥିର କରିପାରିଲା ନାହିଁ । ହଠାତ୍ ସେ କହିପକାଇଲା—“ଆଜ ଶୁଭ ରାଶି-ନକ୍ଷତ୍ର ନଥିବାରୁ ଆମ୍ବ ଫଳୁନାହିଁ ।”

ରାଜା ଟିକିଏ ବିରକ୍ତ ହୋଇ କହିଲେ, “କାହିଁ, ସେଦିନ ତ ବାର, ରାଶିନକ୍ଷତ୍ର କଥା କିଛି ନ ଥିଲା । ଆଜ ଏସବୁ କଥା ଉଠୁଛି କାହିଁକି ? ପ୍ରକୃତ କଥା ମୋତେ ଜଣାଇବାକୁ ହେବ ।”

ବ୍ରାହ୍ମଣ ରାଜାଙ୍କର କ୍ରୋଧ ଦେଖି ଭୟ କରିଗଲା । ସେ ଭାବିଲା—ମୁଁ ପ୍ରକୃତ ଚଣ୍ଡାଳ ଗୁରୁଙ୍କୁ ଅସ୍ୱୀକାର କରି ମନ୍ତ୍ରଟି ହରାଇଛି । ଆଜ ଉପଯୁକ୍ତ ରାଶି ନକ୍ଷତ୍ର ନୁହେଁ ବୋଲି କହି ଆହୁରି ଗୋଟିଏ ମିଥ୍ୟାକଥା କହିଛି । ଏବେ ଦେଖୁଛି ମିଥ୍ୟା କହିବାଦ୍ୱାରା ରାଜାଙ୍କ କ୍ରୋଧରୁ ରକ୍ଷା ପାଇ ପାରିବି ନାହିଁ; ତେଣୁ ସତ୍ୟ କଥା କହେଁ । ସେ କହିଲା, “ମହାରାଜ ! ମୋର ପାପରୁ ମନ୍ତ୍ରର ଶକ୍ତି ଚାଲିଯାଇଛି । ଜଣେ ଚଣ୍ଡାଳ ମୋତେ ଏହି ମନ୍ତ୍ର ଶିକ୍ଷାଦେଇ ଥିଲେ ଓ କେହି ପଚାରିଲେ ମୁଁ ଏହା ଲୁଚାଇବି ନାହିଁ ବୋଲି ସାବଧାନ କରି ଦେଇଥିଲେ; କିନ୍ତୁ ମୁଁ ହତଭାଗ୍ୟ । ଜଣେ ଚଣ୍ଡାଳଙ୍କୁ ମୁଁ ଗୁରୁ କରିଥିଲି ବୋଲି କାଳେ ଆପଣ ମୋତେ ଘୃଣା କରିବେ ଭାବି ମୁଁ ମିଥ୍ୟା କହିଅଛି ଓ ତାହାଫଳରେ ମନ୍ତ୍ରଟି ହରାଇଅଛି ।”

ରାଜା ବିରକ୍ତ ହୋଇ କହିଲେ, “ରେ ମୂର୍ଖ ବ୍ରାହ୍ମଣ ! ତୁ ଏତେବଡ଼ ମହାସମ୍ପଦ ପାଇ ନିଜ ନିର୍ବୋଧତାରୁ ତାହା ହରାଇଲୁ । ଯେ ଏଭଳି ମହାରତ୍ନର ଅଧିକାରୀ ତାର ଜାତି ବିଚାର କରେ କିଏ ? ଯାହାଠାରୁ ଶିକ୍ଷା ମିଳେ ସେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ,

Digitized by srujanika@gmail.com

ଶୂଦ୍ର, ଗୃଣ୍ଡାଳ ଯାହାକରୁ ହେଉନା କାହିଁକି ସେ ଗୁରୁ —ସେ ପୂଜ୍ୟ । ତୁ ଯେଉଁ ପାପ କରିଛୁ ତାର ପ୍ରାୟଶ୍ଚିତ୍ତ ନାହିଁ । ଯାଆ, ସେହି ଗୁରୁ ଇଚ୍ଛାକଲେ ତୋତେ କ୍ଷମା ଦେଇ ପୁଣି ମନ୍ତ୍ରଶିକ୍ଷା ଦେଇପାରନ୍ତି । ଯଦି ପୁଣି ମନ୍ତ୍ର ଶିକ୍ଷା କରି ନପାରୁ ତେବେ ଆଉ ମୋ ରାଜ୍ୟରେ ପ୍ରବେଶ କରିବୁ ନାହିଁ ।”

ବ୍ରାହ୍ମଣ ଅଗତ୍ୟା ପୁଣି ସେହି ଗୃଣ୍ଡାଳଗୁରୁଙ୍କ ପାଖକୁ ଆସି ଦୋଷ ସ୍ୱୀକାର କରି କ୍ଷମା ମାଗିଲା । ଗୁରୁ କହିଲେ, “ମୁଁ ଆଗରୁ ସାବଧାନ କରି ଦେଇଥିଲେହେଁ ତୁ ଏପରି ଭ୍ରମ କରିବୁ ବୋଲି ଆଶା କରି ନଥିଲି । ତୁ ମୋତେ ଗୁରୁ ବୋଲି ସ୍ୱୀକାର ନ କରିବା ଦ୍ୱାରା ମୋର କ୍ଷତି ହୋଇନାହିଁ; ହୋଇଛି ତୋର । ତେଣୁ ମୁଁ ଆନନ୍ଦରେ ତୋତେ କ୍ଷମା ଦେଉଛି ।”

ବ୍ରାହ୍ମଣ ଆଉ ଥରେ ମନ୍ତ୍ର ଶିଖାଇଦେବାକୁ ଅନେକ ଅନୁରୋଧ କଲା; କିନ୍ତୁ ଗୃଣ୍ଡାଳ କହିଲେ, “କୃତଘ୍ନ, ମିଥ୍ୟାବାଦୀ ଲୋକଙ୍କୁ ବହୁମୂଲ୍ୟ ମନ୍ତ୍ର ଶିକ୍ଷା ଦେବା ଅନୁଚିତ ।”

ବ୍ରାହ୍ମଣ ହତାଶ ହୋଇ ବନରେ ବୁଲି ବୁଲି ପ୍ରାଣତ୍ୟାଗ କଲା ।

## କପୋତ ଜାତକ

ବ୍ରହ୍ମଦତ୍ତ ବାରାଣସୀରେ ରାଜତ୍ୱ କରୁଥିବା ସମୟରେ ବୋଧିସତ୍ତ୍ୱ ଏକ କପୋତରୂପେ ଜନ୍ମଗ୍ରହଣ କରିଥିଲେ । ସେ କାଳରେ ଲୋକେ ପକ୍ଷୀମାନଙ୍କର ଆଶ୍ରୟ ନିମନ୍ତେ ଉଚ୍ଚ ସ୍ଥାନମାନଙ୍କରେ

Digitized by srujanika@gmail.com

ଗୋଟିଏ ଗୋଟିଏ ଝୋଡ଼ିକେଇ ରଖିଦେଉଥିଲେ । ବାରାଣସୀର ଜଣେ ଶ୍ରେଷ୍ଠୀଙ୍କର ପାଚକ ମଧ୍ୟ ପାକଶାଳା ଉପରେ ସେହିପରି ଗୋଟିଏ ଝୋଡ଼ିକେଇ ରଖିଦେଇଥିଲା । ବୋଧିସତ୍ତ୍ୱ ଏହି ଝୋଡ଼ିକେଇରେ ବାସ କରୁଥିଲେ । ପ୍ରତିଦିନ ସକାଳେ ସେ ଆହାର ଅନ୍ୱେଷଣ କରିବାକୁ ଉଡ଼ିଯାଉଥିଲେ ଓ ସନ୍ଧ୍ୟାବେଳକୁ ଫେରିଆସି ସେହି ଝୋଡ଼ିକେଇରେ ଆଶ୍ରୟ ନେଉଥିଲେ ।

ଦିନେ ଗୋଟିଏ କୁଆ ପାକଶାଳା ଉପରେ ଉଡ଼ି-ଯାଉଥିଲା । ପାକଶାଳାରେ ରନ୍ଧା ହେଉଥିବା ମିଷ୍ଟାନ୍ନ, ମାଂସ ପ୍ରଭୃତିର ସୁଗନ୍ଧ ପାଇ କୁଆ ତାହା ଖାଇବାକୁ ମନ କଲା । ସେ ରନ୍ଧନଶାଳାର ନିକଟରେ ଗୋଟିଏ ସ୍ଥାନରେ ଲୁଚି ବସିରହିଲା । ସନ୍ଧ୍ୟା ହେବାରୁ ବୋଧିସତ୍ତ୍ୱ ଫେରିଆସି ପାକଶାଳାରେ ଥିବା ଝୋଡ଼ିକେଇରେ ପ୍ରବେଶ କଲେ । କୁଆ ତାହା ଲକ୍ଷ୍ୟ କରି ଭାବିଲା, "ଏହି କପୋତ ସାହାଯ୍ୟରେ ମୋର ଅଭିଳାଷ ପୂର୍ଣ୍ଣ କରିବି ।"

ତତ୍ପର ଦିନ ସକାଳେ ବୋଧିସତ୍ତ୍ୱ ଝୋଡ଼ିକେଇରୁ ବାହାରି ଖାଦ୍ୟ ଅନ୍ୱେଷଣରେ ଗଲାବେଳକୁ କୁଆ ତାଙ୍କ ପଛେ ପଛେ ଗଲା । ବୋଧିସତ୍ତ୍ୱ ଯେଉଁଆଡ଼େ ଯାଉଥାନ୍ତି, କୁଆ ମଧ୍ୟ ସେହିଆଡ଼େ ଯାଉ-ଥାଏ । ତାହା ଲକ୍ଷ୍ୟ କରି ବୋଧିସତ୍ତ୍ୱ ପଚାରିଲେ, "ତୁମେ ମୋ ସାଙ୍ଗେ ସାଙ୍ଗେ ଏପରି କାହିଁକି ଯାଉଛ ?" କୁଆ କହିଲା, "ମହାଭାଗ, ଆପଣଙ୍କର ଆଚରଣରେ ମୁଁ ଏତେଦୂର ମୁଗ୍ଧ ହୋଇଅଛି ଯେ ଆପଣଙ୍କ ସଙ୍ଗ ଛାଡ଼ିପାରୁନାହିଁ ।" ବୋଧିସତ୍ତ୍ୱ କହିଲେ, "ଦେଖ, ଆମ ଦୁହିଙ୍କ ମଧ୍ୟରେ ପାର୍ଥକ୍ୟ ଅତି ବେଶି । ତୁମେ ହେଉଛ ମାଂସାଶୀ । ମୁଁ ଶସ୍ୟକଣା ସଂଗ୍ରହ କରି ଖାଏଁ । ତେଣୁ ମୋ ସଙ୍ଗରେ ରହିବାଦ୍ୱାରା ତୁମର ଅସୁବିଧା ହେବ ।"

Digitized by srujanika@gmail.com

କୁଆ କହିଲା, "ଆପଣଙ୍କ ଦେହ ମାତ୍ର ପୁରୁଷଙ୍କର ସଙ୍ଗଲାଭ କରିବା ବହୁ ଭାଗ୍ୟର କଥା । ମୋର ଖାଦ୍ୟ ନିମନ୍ତେ ଆପଣ ଚିନ୍ତିତ ହେବେ ନାହିଁ । ଆପଣଙ୍କ ପାଖେ ପାଖେ ରହି, ଆପଣଙ୍କର ଖାଦ୍ୟ ଖାଇ ମଧ୍ୟ ମୁଁ ସ୍ୱଚ୍ଛନ୍ଦରେ ଚଳିପାରିବି । ମୋତେ ତଡ଼ିଦିଅନ୍ତୁ ନାହିଁ ।" ଶେଷରେ ବୋଧିସତ୍ତ୍ୱ କହିଲେ, "ହେଉ, ତୁମେ ମୋ ପାଖରେ ରହିବାରେ ମୋର ଆପତ୍ତି ନାହିଁ; କିନ୍ତୁ ଗୋଟିଏ କଥା ମନେ ରଖିଥିବ—କାହାରିକୁ ପ୍ରତାରଣା କରିବ ନାହିଁ ।"

ବୋଧିସତ୍ତ୍ୱ ଏଣେତେଣେ ବୁଲି ଶସ୍ୟକଣିକା ପାଇଲେ ଖାଉଥାନ୍ତି । କୁଆ ତାଙ୍କ ପାଖେ ପାଖେ ରହି ମଇଳାଗଦାରୁ କୀଟପତଙ୍ଗ ବାହାର କରି ଖାଉଥାଏ । ସନ୍ଧ୍ୟାବେଳକୁ ବୋଧିସତ୍ତ୍ୱ ନିଜ ବାସସ୍ଥାନକୁ ଫେରିଆସିଲେ । କୁଆ ମଧ୍ୟ ତାଙ୍କ ସଙ୍ଗେ ସଙ୍ଗେ ସେହି ପାକଶାଳାରେ ପ୍ରବେଶ କଲା । ତାହାକୁ ଦେଖି ପାଚକ ଭାବିଲା, "କପୋତଟି ଆଜି ଜଣେ ସଙ୍ଗୀ ନେଇ ଆସିଛି । ତାହାର ରହିବା ପାଇଁ ବ୍ୟବସ୍ଥା କରିଦେବା ଉଚିତ ।" ଏହାପରେ ପାଚକ ସେ କୁଆ ପାଇଁ ଆଉ ଗୋଟିଏ ଟୋକେଇ ଟାଙ୍ଗିଦେଲା । କୁଆ ନିଶ୍ଚିନ୍ତରେ ସେଥିରେ ରହିଲା । ସେହିଦିନଠାରୁ କପୋତ ଓ କୁଆ ଦୁହେଁଯାକ ପାକଶାଳାରେ ବାସ କରିବାକୁ ଲାଗିଲେ ।

ପାକଶାଳାରେ ନାନାପ୍ରକାରର ଖାଦ୍ୟଦ୍ରବ୍ୟ ପ୍ରତିଦିନ ପ୍ରସ୍ତୁତ ହୁଏ । ସେଥିରୁ କିଛି ଖାଇବା ପାଇଁ କୁଆର ଲୋଭ; କିନ୍ତୁ ତାକୁ ସୁଯୋଗ ମିଳେ ନାହିଁ । ଦିନେ ଶ୍ରେଷ୍ଠୀ ରନ୍ଧନ ନିମନ୍ତେ ଗୋଟିଏ ବୃହତ୍ ମତ୍ସ୍ୟ ଆଣିଥିଲେ । ପାଚକ ତାହାକୁ ରନ୍ଧନଶାଳାର କାନ୍ଥରେ ଝୁଲାଇ ଦେଇଥିଲା । ଏହାକୁ ଦେଖି କୁଆର ପାଟିରୁ ଲାଳ ବୋହିଲା । ସେଥିରୁ କିଛି ଖାଇବ ବୋଲି ସେ ଗୋଟାଏ କୌଶଳ

Digitized by srujanika@gmail.com

ପାଞ୍ଚିଲା । ସେଦିନ ରାତ୍ରିରେ ସେ ପୀଡ଼ିତ ଥିବାର ଛଳନା କଲା । ମଝିରେ ମଝିରେ ଯନ୍ତ୍ରଣା ଭୋଗିଲା ପରି ଶବ୍ଦ କରୁଥାଏ ।

ସକାଳେ ବୋଧିସତ୍ତ୍ୱ ଯିବାକୁ ବାହାରିଲେ; କିନ୍ତୁ କୁଆ ଟୋକେଇରେ ଶୋଇ ରହିଥାଏ । ବୋଧିସତ୍ତ୍ୱ ପଚାରିଲେ, "ଆଜି ଆହାର ସଂଗ୍ରହ କରିବାକୁ ଯିବ ନାହିଁ କି ?" କୁଆ କହିଲା, "ମହାଭାଗ, ମୋର ଉଦରପୀଡ଼ା ହୋଇଅଛି । କାଲି ରାତିଯାକ ନିଦ୍ରା ନାହିଁ । ଏବେ ମଧ୍ୟ ଉଦରରେ ଯନ୍ତ୍ରଣା ରହିଛି ।"

ବୋଧିସତ୍ତ୍ୱ କହିଲେ, "କୁଆମାନଙ୍କର ଉଦରରୋଗ ହେବା କେବେ ଶୁଣି ନ ଥିଲି । ମୋର ସନ୍ଦେହ ହେଉଛି, ପାକଶାଳାରେ ସିଦ୍ଧ ହେଉଥିବା ମାଛ ମାଂସ ଉପରେ ତୁମର ଲୋଭ । ସେ କଥା ଭୁଲିଯାଅ । ମନୁଷ୍ୟମାନଙ୍କର ଖାଦ୍ୟ ଖାଇବାକୁ ଆମେ କାହିଁକି ଆଶା କରିବା ? ଆସ, ସଙ୍ଗ ହୋଇ ଆହାର ଅନ୍ୱେଷଣ କରିବାକୁ ଯିବା ।"

କିନ୍ତୁ କୁଆ ଅତିଶୟ ଯନ୍ତ୍ରଣା ହେଉଥିବାର ଛଳନା କରି କହିଲା, "ମୋର ପେଟରେ ଏପରି ବ୍ୟଥା ହେଉଛି; ସେଥିରେ ପୁଣି ମାଛ ମାଂସ ଖାଇବାକୁ ଆଶା କରିବି ? ଆପଣଙ୍କ ସଙ୍ଗରେ ଯିବାପାଇଁ ବଳ ଥିଲେ ମୁଁ କଅଣ ଯାଆନ୍ତି ନାହିଁ ।" ବୋଧିସତ୍ତ୍ୱ କହିଲେ, "ଆଚ୍ଛା, ତୁମେ ନ ଗଲେ ମୋର କିଛି କ୍ଷତି ନାହିଁ; କିନ୍ତୁ ତୁମର ପ୍ରକୃତ ଉଦ୍ଦେଶ୍ୟ ତୁମ କାର୍ଯ୍ୟରୁ ଜଣାପଡ଼ିବ । ଯାହା ହେଉ, ସାବଧାନ କରିଦେଉଛି, ଲୋଭରେ ପଡ଼ି ଅନ୍ୟାୟ କାର୍ଯ୍ୟ କରିବ ନାହିଁ ।" ଏହା କହି ବୋଧିସତ୍ତ୍ୱ ବାହାରିଗଲେ ।

ପାଚକ ମାଛକୁ ଖଣ୍ଡ ଖଣ୍ଡ କରି କାଟି ବିଭିନ୍ନ ପ୍ରକାରର ଖାଦ୍ୟ ପ୍ରସ୍ତୁତ କରିବାରେ ଲାଗିଲା । କଡ଼େଇରେ ତରକାରି, ଭଜା

Digitized by srujanika@gmail.com

ପ୍ରସ୍ତୁତ ରଖି ସେ ତାହା ଉପରେ ଗୋଟିଏ ଲେଖାଏଁ ଥାଳି ଢାଙ୍କି-ଦେଲା । କିଆଁ ତାତରେ ତାର ଦେହରୁ ଝାଳ ବହୁଥିବାରୁ ସେ ବାହାରକୁ ଚାଲିଆସିଲା । ଏଣେ କୁଆ ଟୋକେଇ ଭିତରେ ରହି ପାଚକକୁ ଗୁହିଁଥିଲା । ସେ ବାହାରକୁ ଯିବାମାତ୍ରେ କୁଆ ଭାବିଲା, "ଏଇ ହେଉଛି ସୁବର୍ଣ୍ଣ ସୁଯୋଗ । ଏ ସୁଯୋଗ ଛାଡ଼ିଲେ ପରେ ଅନୁତାପ କରିବାକୁ ହେବ ।"

ସେ ମାଛଭଜାରୁ ଖଣ୍ଡିଏ ନେବାକୁ ସ୍ଥିର କଲା । ହଠାତ୍ ଟୋକେଇରୁ ଉଡ଼ିଆସି ସେ କଡ଼େଇ ଉପରେ ବସିଗଲା ଓ ଥାଳିଟିକୁ ଥଣ୍ଟରେ ଉଠାଇବାକୁ ଚେଷ୍ଟା କଲା । ଏହା ଫଳରେ ଶବ୍ଦ ହେଲା । ପାଚକ ଘର ଭିତରକୁ ଦଉଡ଼ିଆସି ଦେଖିଲା, କୁଆ ଥାଳିକୁ ଚୁମ୍ବୁଛି । ସେ ହଠାତ୍ ଦ୍ୱାର୍‌କୁ ବନ୍ଦ କରିଦେଲା । କୁଆ ବାହାରକୁ ଯାଇ ପାରିଲା ନାହିଁ । ତତ୍ପରେ ପାଚକ କୁଆକୁ ଧରି କହିଲା, "ତୁ ତ କମ୍ ସଇତାନ ନୋହୁ । ମୁଁ ଶ୍ରେଷ୍ଠୀଙ୍କ ପାଇଁ ଖାଦ୍ୟ ପ୍ରସ୍ତୁତ କରି ରଖିଛି; ତାକୁ ତୁ ଚୋରାଇ ଖାଉଛୁ । ତୋତେ ଉପଯୁକ୍ତ ଶିକ୍ଷାଦେବା ଦରକାର ।"

ଏହା କହି ସେ କୁଆର ଦେହରୁ ପରଯାକ ଉପାଡ଼ି ପକାଇଲା ଓ ତା ଦେହରେ କିଛି ବଟା ଲଙ୍କାମରିଚ ବୋଳିଦେଇ ଟୋକେଇ ଭିତରକୁ ଫିଙ୍ଗିଦେଲା । ସେ ଯନ୍ତ୍ରଣାରେ ଛଟପଟ ହେବାକୁ ଲାଗିଲା ।

ସନ୍ଧ୍ୟାବେଳକୁ ବୋଧିସତ୍ତ୍ୱ ଘରକୁ ଫେରିଆସି କୁଆର ଅବସ୍ଥା ଦେଖିଲେ । ସେ କହିଲେ, "ମୁଁ ତୁମକୁ ବାରମ୍ବାର କହିଛି ଯେ ଲୋଭ କରିବ ନାହିଁ, ଅନ୍ୟାୟ କରିବ ନାହିଁ । ତୁମର ଲୋଭ ଓ ପ୍ରତାରଣା ହେତୁ ଏ ଦଶା ଭୋଗ କରୁଛ । ହେଉ, ତୁମେ ଥାଅ ।

Digitized by srujanika@gmail.com

ମୁଁ ଅଉ ଏ ସ୍ଥାନରେ ରହିପାରିବି ନାହିଁ ।" ଏହା କହି ସେ ଅନ୍ୟତ୍ର ଚାଲିଗଲେ ।

କୁଆ ଯନ୍ତ୍ରଣାରେ ଛଟପଟ ହୋଇ କିଛି ସମୟ ପରେ ପ୍ରାଣତ୍ୟାଗ କଲା । ପାଚକ ଟୋକେଇ ସହିତ ତାକୁ ବାହାରକୁ ଫିଙ୍ଗିଦେଲା । ***

## ବେଦବ୍ଭ ଜାତକ

ବ୍ରହ୍ମଦତ୍ତ ବାରାଣସୀରେ ରାଜତ୍ୱ କରୁଥିବା ସମୟରେ କୌଣସି ଗ୍ରାମରେ ଜଣେ ବ୍ରାହ୍ମଣ ବାସ କରୁଥିଲେ । ସେ ଏକ ବିଚିତ୍ର ମନ୍ତ୍ର ଜାଣିଥିଲେ । ଏହି ମନ୍ତ୍ରର ନାମ ବେଦବ୍ଭ । ବର୍ଷର କୌଣସି ଦିନ ଗ୍ରହନକ୍ଷତ୍ରମାନେ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ଅବସ୍ଥାନ କରୁଥିଲାବେଳେ ସେ ଏହି ମନ୍ତ୍ର ପାଠ କରି ଆକାଶକୁ ଚାହିଁଲେ ସ୍ୱର୍ଣ୍ଣ, ରୌପ୍ୟ, ମୁକ୍ତା, ପ୍ରବାଳ, ଇନ୍ଦ୍ରନୀଳ, ବୈଦୁର୍ଯ୍ୟ ଓ ହୀରକ ଏହି ସପ୍ତରତ୍ନ ବୃଷ୍ଟି ହେଉଥିଲା ।

ଏହି ସମୟରେ ବୋଧିସତ୍ତ୍ୱ ଉକ୍ତ ବ୍ରାହ୍ମଣଙ୍କର ଶିଷ୍ୟରୂପେ ପୃଥିବୀରେ ଜନ୍ମିଥିଲେ । ସେ ଗୁରୁଙ୍କର ସେବା କରି ତାଙ୍କ ପାଖେ ପାଖେ ରହୁଥିଲେ । ଦିନେ ବ୍ରାହ୍ମଣ କୌଣସି କାର୍ଯ୍ୟ ଉପଲକ୍ଷରେ ବୋଧିସତ୍ତ୍ୱଙ୍କୁ ସଙ୍ଗରେ ନେଇ ଚେତିଯ ନଗରକୁ ବାହାରିଲେ । ଯାଉ ଯାଉ ସେମାନେ ଏକ ବନ ନିକଟରେ ଉପସ୍ଥିତ ହେଲେ ।

Digitized by srujanika@gmail.com

ଏହ୍ଵ ବନରେ ପ୍ରେଷଣକ ବୋଲ ଗୋଟିଏ ପ୍ରକାଣ୍ଡ ଦସ୍ୟୁଦଳ ଥିଲା । ପାଞ୍ଚଶତ ଦସ୍ୟୁ ଏହ୍ଵ ଦଳରେ ଥିଲେ। ଏମାନଙ୍କୁ ପ୍ରେଷଣକ କହ୍ଵବାର ଏକ କାରଣ ଥିଲା । ସେମାନେ ଦୁଇ ବା ତତୋଽଧିକ ପଥିକ ଦେଖିଲେ ସେମାନଙ୍କ ମଧ୍ୟରୁ ଜଣକୁ ଛାଡ଼ି ଅନ୍ୟମାନଙ୍କୁ ବନ୍ଦୀ କର ରଖୁଥିଲେ ଓ ସେ ଜଣକୁ ଅର୍ଥ ନେଇ ଫେରଆସିବାକୁ ପ୍ରେଷଣ କରୁଥିଲେ (ପଠାଉଥିଲେ)। ସେ ଅର୍ଥ ଆଣି ସେମାନଙ୍କୁ ଦେଲେ ବନ୍ଦୀମାନଙ୍କୁ ମୁକ୍ତ ଦଆଯାଉଥିଲା; ନୋହ୍ଵଲେ ବଧ କରାଯାଉଥିଲା ।

ଦସ୍ୟୁମାନେ ବ୍ରାହ୍ମଣ ଓ ବୋଧିସତ୍ତ୍ୱ ଦୁହ୍ଵଙ୍କୁ ଧରନେଇ ବୋଧିସତ୍ତ୍ୱଙ୍କୁ କହ୍ଵଲେ, "ଏ ବ୍ରାହ୍ମଣ ବନ୍ଦୀ ହୋଇ ରହ୍ଵଲା । ତୁମେ ସପ୍ତାହକ ମଧ୍ୟରେ ଧନ ଆଣିଦେଲେ ତାକୁ ମୁକ୍ତ ଦଆଯିବ; ନଚେତ୍ ବଧ କରାଯିବ ।" ବୋଧିସତ୍ତ୍ୱ ଗୁରୁଙ୍କୁ ପ୍ରଣାମ କର କହ୍ଵଲେ, "ଆପଣ ନଶ୍ଚିନ୍ତ ରହ୍ଵଥାନ୍ତୁ । ମୁଁ ଦୁଇଦନ ମଧ୍ୟରେ ଅର୍ଥ ନେଇ ଆସିଲେ ଆପଣ ମୁକ୍ତ ହେବେ । ତେବେ ଗୋଟିଏ ବିଷୟରେ ଆପଣଙ୍କୁ ସାବଧାନ କରିଦେଉଛି । ଆଜ ରାତ୍ରିରେ ରତ୍ନବୃଷ୍ଟିର ଯୋଗ ଅଛି । ଆପଣ ଅଧୀର ହୋଇ ଦସ୍ୟୁମାନଙ୍କୁ ସନ୍ତୁଷ୍ଟ କର ମୁକ୍ତି ପାଇବା ନମନ୍ତେ ରତ୍ନବୃଷ୍ଟି କରାଇବେ ନାହିଁ । ତାହାଦ୍ୱାରା ଆପଣଙ୍କର ବିନାଶ ଅନିବାର୍ଯ୍ୟ ହୋଇ ପଡ଼ିବ ।"

ଗୁରୁଙ୍କୁ ଏହିପରି ସାବଧାନ କରାଇ ଦେଇ ବୋଧିସତ୍ତ୍ୱ ବାରଣସୀକୁ ଫେରଆସିଲେ ।

ସନ୍ଧ୍ୟା ଉପସ୍ଥିତ ହେବାରୁ ଦସ୍ୟୁମାନେ ବ୍ରାହ୍ମଣଙ୍କୁ ଦୃଢ଼ରୂପେ ବାନ୍ଧି ପକାଇଦେଲେ । ଆକାଶରେ ପୂର୍ଣ୍ଣଚନ୍ଦ୍ର ଉଦିତ ହେଲେ । ବ୍ରାହ୍ମଣଙ୍କର ମନେ ପଡ଼ିଲା ଯେ ରତ୍ନବୃଷ୍ଟି କରାଇବାର ଶୁଭ ସମୟ

Digitized by srujanika@gmail.com

ଉପସ୍ଥିତ । ସେ ଭାବିଲେ, "ଦସ୍ୟୁମାନେ ଅର୍ଥଲୋଭରେ ମୋତେ ବାନ୍ଧି ରଖିଅଛନ୍ତି । ମନ୍ତ୍ରବଳରେ ମୁଁ ସେମାନଙ୍କୁ ଯେତେ ଇଚ୍ଛା ସେତେ ଧନ ଦେଇପାରିବି ଓ ସହଜରେ ମୁକ୍ତ ହେବି । ତାହା ନକରି ବନ୍ଧନରେ ପଡ଼ି ନିର୍ଯାତନା ସହିବି କାହିଁକି ?" ଏହା ବିଚାରି ସେ ଦସ୍ୟୁମାନଙ୍କୁ କହିଲେ, "ତୁମେମାନେ ମୋତେ ଏପରି ବନ୍ଧନରେ ପକାଇ ଯନ୍ତ୍ରଣା ଦେଉଛ କାହିଁକି ?" ସେମାନେ କହିଲେ, "ତୁମର ଶିଷ୍ୟ ମୁକ୍ତିମୂଲ୍ୟ ଆଣିଦେଲେ ତୁମକୁ ମୁକ୍ତି ଦେବୁ; ନ ଆଣିଲେ ହତ୍ୟା କରିବୁ । ଆମେମାନେ ଧନ ଛଡ଼ା ଆଉ କିଛି ଚାହୁଁ ନାହୁଁ ।" ତହୁଁ ବ୍ରାହ୍ମଣ କହିଲେ, "ଯଦି ଏହାହିଁ ତୁମର ଅଭିପ୍ରାୟ, ତେବେ ମୋତେ ବନ୍ଧନରୁ ମୁକ୍ତ କରି ଗୋଟିଏ ନୂତନ ବସ୍ତ୍ର ଓ କିଛି ଫୁଲ ଦିଅ । ଅଳ୍ପ ସମୟରେ ମୁଁ ମନ୍ତ୍ର-ପ୍ରଭାବରେ ତୁମମାନଙ୍କୁ ଆଶାତୀତ ପରିମାଣରେ ଧନରତ୍ନ ଦେଇ ପାରିବି ।" ଏହି ପ୍ରସ୍ତାବରେ ଦସ୍ୟୁମାନେ ଆନନ୍ଦିତ ହୋଇ ବ୍ରାହ୍ମଣଙ୍କର ବନ୍ଧନ ଫିଟାଇଦେଲେ ଓ ନବବସ୍ତ୍ର, ପୁଷ୍ପ ପ୍ରଭୃତି ଯୋଗାଇ ଦେଲେ ।

ବ୍ରାହ୍ମଣ ନଦୀରେ ସ୍ନାନ କରି ନବବସ୍ତ୍ର ପିନ୍ଧି ପୂଜା କଲେ ଓ ଯଥାସମୟରେ ମନ୍ତ୍ରପାଠ କରି ଆକାଶକୁ ଚାହିଁଲେ । ବିବିଧ ରତ୍ନ-ବୃଷ୍ଟି ହେବାକୁ ଲାଗିଲା । ଦସ୍ୟୁମାନେ ସବୁକଥା ଭୁଲିଯାଇ ରତ୍ନ ସଂଗ୍ରହରେ ଲାଗିପଡ଼ିଲେ । ରତ୍ନଗୁଡ଼ିକ ବାନ୍ଧି ସେମାନେ ବ୍ରାହ୍ମଣ ସହିତ କିଛିଦୂର ଗଲାବେଳକୁ ଆଉ ଗୋଟିଏ ଦସ୍ୟୁଦଳ ସେମାନଙ୍କୁ ଭେଟିଲେ । ସେ ଦଳରେ ମଧ୍ୟ ପଞ୍ଚଶତ ଦସ୍ୟୁ ଥିଲେ । ସେମାନେ ପ୍ରେଷଣକ ଦଳକୁ ଆକ୍ରମଣ କରି ସ୍ୱର୍ଣ୍ଣରୌପ୍ୟାଦି ଛଡ଼ାଇବାକୁ ଚେଷ୍ଟାକଲେ । ତହୁଁ ପ୍ରେଷଣକ ଦଳପତି କହିଲା, "ତୁମେମାନେ

Digitized by srujanika@gmail.com

ଆମର ଏଇ ସାମାନ୍ୟ ଧନରତ୍ନ ପାଇଁ ଆମ ସଙ୍ଗେ ଯୁଦ୍ଧ କରିବାର ପ୍ରୟୋଜନ ନାହିଁ । ଆମ ସାଙ୍ଗରେ ଏ ଯେଉଁ ବ୍ରାହ୍ମଣ ଅଛନ୍ତି, ସେ ମନ୍ତ୍ରବଳରେ ଏଗୁଡ଼ିକ ଆକାଶରୁ ବୃଷ୍ଟି କରାଇଅଛନ୍ତି । ତାଙ୍କୁ କହିଲେ ସେ ତୁମମାନଙ୍କୁ ମଧ୍ୟ ସେହିପରି ଧନରତ୍ନ ଦେଇ ପାରିବେ ।"

ଆଗନ୍ତୁକ ଦସ୍ୟୁମାନେ ପ୍ରେଷଣକମାନଙ୍କୁ ଛାଡ଼ି ଦେଇ ବ୍ରାହ୍ମଣଙ୍କୁ ଧରି କହିଲେ, "ଆମମାନଙ୍କ ପାଇଁ ରତ୍ନବୃଷ୍ଟି କରାଅ ।" ବ୍ରାହ୍ମଣ ଉତ୍ତର କଲେ, "ମୁଁ ରତ୍ନବୃଷ୍ଟି କରାଇ ସେମାନଙ୍କୁ ଦେଇଛି, ଏ କଥା ସତ୍ୟ । ତୁମମାନଙ୍କ ପାଇଁ ମଧ୍ୟ ରତ୍ନବୃଷ୍ଟି କରାଇବାରେ ମୋର ଆପତ୍ତି ନାହିଁ । କିନ୍ତୁ ରତ୍ନବୃଷ୍ଟି କରାଇବାର ଯୋଗ ଆଜି ଆଉ ନାହିଁ । ଅନ୍ତତଃ ବର୍ଷକ ମଧ୍ୟରେ ଆଉ ସେ ଯୋଗ ଘଟିବ ନାହିଁ । ତେଣୁ ସେ ପର୍ଯ୍ୟନ୍ତ ତୁମକୁ ଅପେକ୍ଷା କରିବାକୁ ହେବ ।"

ଦସ୍ୟୁମାନେ ଏହା ଶୁଣି କ୍ରୋଧାନ୍ଧ ହୋଇଉଠିଲେ । ସେମାନେ କହିଲେ, "ଆରେ ବ୍ରାହ୍ମଣ ! ତୁ ଆମ ପାଖରେ ପ୍ରତାରଣା କରୁଛୁ । ସେମାନଙ୍କ ପାଇଁ ଯୋଗ ଥିଲା; ଆମମାନଙ୍କ ପାଇଁ ଯୋଗ ନାହିଁ, ସେ କଥା ହେବ ନାହିଁ । ତୋତେ ଏଇ ମୁହୂର୍ତ୍ତରେ ରତ୍ନବୃଷ୍ଟି କରାଇବାକୁ ହେବ ।" ବ୍ରାହ୍ମଣ ନିରୁପାୟ; ଯେତେ କହିଲେ ସୁଦ୍ଧା ସେମାନେ ଶୁଣିଲେ ନାହିଁ । ବ୍ରାହ୍ମଣ ରତ୍ନବୃଷ୍ଟି ନ କରିବାରୁ ସେମାନେ ତାଙ୍କୁ ଖଣ୍ଡ ଖଣ୍ଡ କରି କାଟି ଫିଙ୍ଗିଦେଲେ ଓ ପ୍ରେଷଣକଦଳ ପଛରେ ପୁଣି ଦଉଡ଼ିଲେ । ଦୁଇଦଳ ମଧ୍ୟରେ ପୁଣି ଯୁଦ୍ଧ ଲାଗିଗଲା । ଏଥିରେ ପ୍ରେଷଣକମାନେ ନିହତ ହେଲେ ଓ ସେମାନଙ୍କର ଧନରତ୍ନ ନୂତନ ଦସ୍ୟୁଦଳର ହସ୍ତଗତ ହେଲା ।

Digitized by srujanika@gmail.com

ଏହି ବହୁମୂଲ୍ୟ ଧନରତ୍ନ ବାଣ୍ଟିବା ବିଷୟରେ ଦସ୍ୟୁମାନଙ୍କ ମଧ୍ୟରେ ମତଭେଦ ସୃଷ୍ଟି ହେଲା । ସେମାନେ ଆପଣା ମଧ୍ୟରେ ପ୍ରଚଣ୍ଡ ଯୁଦ୍ଧ ଆରମ୍ଭ କରିଦେଲେ । ଏହି ଯୁଦ୍ଧ ଫଳରେ ଦୁଇ ଜଣଙ୍କ ଛଡ଼ା ଅନ୍ୟ ସମସ୍ତେ ନିହତ ହେଲେ । ସେ ଦୁହେଁ ସମସ୍ତ ଧନରତ୍ନ ଏକତ୍ର କରି ଗୋଟିଏ ଗ୍ରାମର ନିକଟବର୍ତ୍ତୀ ଜଙ୍ଗଲକୁ ବୋହିନେଲେ । ଗୋଟିଏ ବୃକ୍ଷମୂଳରେ ତାହାକୁ ରଖି ଜଣେ ଜଗି ରହିଲା ଓ ଅନ୍ୟ ଜଣେ ଖାଦ୍ୟ ଓ ପାନୀୟ ଆଣିବା ନିମନ୍ତେ ଗ୍ରାମକୁ ଗଲା ।

ଜଗିରହିଥିବା ଦସ୍ୟୁ ଭାବିଲା, "ସାଥୀଜଣକ ଖାଦ୍ୟ ନେଇ ଆସିଲେ, ଏ ଧନରତ୍ନରୁ ଅଧେ ଦାବି କରିବ । ତାକୁ ମାରିଦେଲେ ସବୁ ମୋର ହେବ । ସେ ଆସି ପହଞ୍ଚିବାମାତ୍ରେ ତାକୁ ହତ୍ୟା କରିବି ।" ଏହା ବିଚାରି ସେ ଖଣ୍ଡା ଧରି ପ୍ରସ୍ତୁତ ହୋଇ ରହିଲା ।

ତେଣେ ଗ୍ରାମକୁ ଯାଇଥିବା ଦସ୍ୟୁଟି ସେହିପରି ଭାବିଲା, "ମୋର ସାଙ୍ଗ ନିଶ୍ଚୟ ଏହି ଧନରୁ ଅଧେ ନେବ । ତାକୁ ମାରି-ଦେଲେ ସବୁଯାକ ମୋର ହୁଅନ୍ତା । ତାକୁ ମାରିଦେବା ମଧ୍ୟ କଠିନ କାମ ନୁହେଁ । ମୁଁ ତା ପାଇଁ ଖାଇବା ଜିନିଷ ନେଇଯିବି । ସେଥିରେ କିଛି ବିଷ ମିଶାଇଦେଲେ ସେ ତାକୁ ଖାଇ ମରିବ । ଏ କଥା କେହି ଜାଣିପାରିବେ ନାହିଁ ।"

ଏହା ବିଚାରି କରି ସେ ନିଜେ ଖାଇଲା ଓ ସଙ୍ଗୀ ପାଇଁ ନେଇଥିବା ଖାଦ୍ୟରେ କିଛି ବିଷ ମିଶାଇଦେଲା । ସେ ଖାଦ୍ୟଦ୍ରବ୍ୟ ନେଇ ବୃକ୍ଷମୂଳରେ ପହଞ୍ଚିଲାକ୍ଷଣି ଅପର ଦସ୍ୟୁ ତାହାକୁ ଖଣ୍ଡାରେ ହାଣିଦେଇ ଭାବିଲା, "ଏବେ କଣ୍ଟା ଗଲା । ଏଣିକି ଏସବୁ ଧନରତ୍ନ ଏକା ମୋର ।"

Digitized by srujanika@gmail.com

ତତ୍ପରେ ସେ ଖାଇବାକୁ ଲଗିଲା; ମାତ୍ର ଖାଇବାର ଅଳ୍ପ ସମୟ ପରେ ସେ ବିଷର କ୍ରିୟା ହେତୁରୁ ମୃତ୍ୟୁମୁଖରେ ପଡ଼ିଲା । ଏହିପରି ସେ ଦୁହିଁଙ୍କର ମୃତ୍ୟୁ ହେଲା ଓ ଧନରତ୍ନ ବୃକ୍ଷମୂଳରେ ପଡ଼ିରହିଲା ।

ଏଣେ ବୋଧିସତ୍ତ୍ୱ ଗୁରୁଙ୍କ ମୁକ୍ତି ପାଇଁ ଅର୍ଥ ଘେନି ବନରେ ଉପସ୍ଥିତ ହେଲେ । ସେଠାରେ ଗୁରୁଙ୍କୁ କିମ୍ବା ଦସ୍ୟୁମାନଙ୍କୁ ଦେଖି-ପାରିଲେ ନାହିଁ । କେତେକ ରତ୍ନ ଇତସ୍ତତଃ ବିକ୍ଷିପ୍ତ ହୋଇ ପଡ଼ିଥିବାର ଦେଖି ତାଙ୍କ ମନରେ ସନ୍ଦେହ ହେଲା ଯେ ଗୁରୁ ତାଙ୍କର ଉପଦେଶ ନ ମାନି ରତ୍ନ ବୃଷ୍ଟି କରାଇ ବିପଦ ବରଣ କରିଅଛନ୍ତି । ସେ କିଛି ଦୂର ଯାଇ ଦେଖିଲେ, ଗୁରୁଙ୍କର ମୃତ ଦେହ ଖଣ୍ଡ ଖଣ୍ଡ ହୋଇ ପଡ଼ିଅଛି । ଆହୁରି କିଛିଦୂର ଅଗ୍ରସର ହେବାପରେ ଶତଶତ ଦସ୍ୟୁଙ୍କର ଶବ ତାଙ୍କ ଦୃଷ୍ଟିଗୋଚର ହେଲା । ବନପଥରେ ଶବ ଦେଖି ଶେଷରେ ଯେ ଗୋଟିଏ ବୃକ୍ଷମୂଳରେ ଉପସ୍ଥିତ ହୋଇ ପ୍ରଚୁର ଧନରତ୍ନ ଓ ଦୁଇଜଣ ଦସ୍ୟୁଙ୍କର ଶବ ଦେଖିପାରିଲେ । ପାଖରେ ଖାଦ୍ୟପାତ୍ରଟି ପଡ଼ିଥିଲା । ଏଥିରୁ ସେ ସମସ୍ତ ଘଟଣା ଅନୁମାନ କରି ପାରି କହିଲେ, "ହାୟ ! ମୋର ଗୁରୁ ମୋର କଥା ନ ମାନି କେବଳ ନିଜର ବିନାଶ କଲେନାହିଁ; ସହସ୍ର ଦସ୍ୟୁଙ୍କର ମଧ୍ୟ ମୃତ୍ୟୁର କାରଣ ହେଲେ । ଅନ୍ୟାୟ ଉପାୟରେ ନିଜର ସ୍ୱାର୍ଥ-ସାଧନ କରିବାକୁ ଗଲେ ଫଳ ଏହିପରି ଖରାପ ହୋଇଥାଏ ।"

ବୋଧିସତ୍ତ୍ୱ ସେହି ଧନରତ୍ନକୁ ନେଇ ଦାନଦରିଦ୍ରଙ୍କ ସେବାରେ ବ୍ୟୟ କରିଦେଲେ ।



Digitized by srujanika@gmail.com

# ଭୀମସେନ ଜାତକ

ଏକସମୟରେ ବୋଧିସତ୍ତ୍ୱ ଜଣେ ବ୍ରାହ୍ମଣର ପୁତ୍ରରୂପେ ଜନ୍ମିଥିଲେ । ବୟସ ହେବାରୁ ସେ ତକ୍ଷଶିଳା ଯାଇ ସେଠାରେ ଜଣେ ଖ୍ୟାତନାମା ଗୁରୁଙ୍କ ନିକଟରେ ଶିକ୍ଷାଲାଭ କଲେ ଏବଂ ଅଳ୍ପକାଳ ମଧ୍ୟରେ ସମସ୍ତ ବେଦ ଓ ଧର୍ମଶାସ୍ତ୍ରରେ ନିପୁଣ ହୋଇ-ଗଲେ । ଅସ୍ତ୍ରବିଦ୍ୟାରେ ବିଶେଷତଃ ଧନୁର୍ବିଦ୍ୟାରେ ମଧ୍ୟ ତାଙ୍କର ଯଥେଷ୍ଟ ପାରଦର୍ଶିତା ଜନ୍ମିଲା ।

ବୋଧିସତ୍ତ୍ୱ ଏତେ ଗୁଣରେ ବିଭୂଷିତ ଥିଲେହେଁ କଦାକାର ଥିଲେ । ଏକେ ସେ ଥିଲେ ବାମନ; ସେଥିରେ ପୁଣି ଶରୀରଟା ବଙ୍କ । ତେଣୁ ଅସୀମ ସାହସୀ ଓ ଧନୁର୍ଦ୍ଧର ହେଲେହେଁ ସେ ନିଜକୁ ଜଣେ ବୀର ବୋଲି ପରିଚୟ ଦେବାକୁ ଲଜ୍ଜାବୋଧ କରୁଥିଲେ ।

ବିଦ୍ୟାଶିକ୍ଷା ପରେ ସେ ଗୁରୁଙ୍କଠାରୁ ବିଦାୟ ନେଇ ସାଂସାରିକ ଅଭିଜ୍ଞତା ଲାଭ କରିବା ଉଦ୍ଦେଶ୍ୟରେ ଦେଶଭ୍ରମଣରେ ବାହାରିଲେ । ଅନେକ ସ୍ଥାନ ବୁଲି ସେ ଆନ୍ଧ୍ର ଦେଶରେ ପହଞ୍ଚିଲେ । ସେ ଭାବିଲେ, ଜୀବିକା ଅର୍ଜନର ପନ୍ଥା ଦେଖିବା ଆବଶ୍ୟକ; କିନ୍ତୁ ତାଙ୍କର କଦାକାର ଶରୀର ଦେଖି କିଏ ତାଙ୍କୁ ଉପଯୁକ୍ତ କାର୍ଯ୍ୟ ଦେବ ? ତେଣୁ ସେ ଜଣେ ରୂପବାନ୍ ଉନ୍ନତ ପୁରୁଷର ସନ୍ଧାନରେ ବାହାରିଲେ । ସେ ମନେକଲେ ଯେ ତାହାକୁ ଆଶ୍ରୟ କରି ସେ ନିଜ ଯୋଗ୍ୟତାବଳରେ ତାର ଓ ନିଜର ଉନ୍ନତି କରିପାରିବେ ।

Digitized by srujanika@gmail.com

ଗୋଟିଏ ଗ୍ରାମରେ ସେ ଜଣେ ତନ୍ତୀକୁ ଦେଖିଲେ । ଲୋକଟି ଖୁବ୍ ଡେଙ୍ଗା । ତାର ଦେହର ରଙ୍ଗ ଗୌର, ବକ୍ଷଦେଶ ପ୍ରଶସ୍ତ ଓ ମାଂସପେଶୀ ସୁଗଠିତ । ତାହାକୁ ଦେଖି ବୋଧିସତ୍ତ୍ୱ ପଚାରିଲେ, "ତୁମେ କିଏ ? କଅଣ କର ?"

ଲୋକଟି ଉତ୍ତର କଲା, "ମୁଁ ଏହି ଗ୍ରାମର ଜଣେ ତନ୍ତୀ; ଲୁଗା ବୁଣି କଷ୍ଟରେ ଜୀବିକା ଅର୍ଜନ କରେଁ । ମୋର ନାମ ଖ୍ରୀମସେନ ।"

ବୋଧିସତ୍ତ୍ୱ ମନେ କଲେ, "ବାସ୍ତବିକ ଖ୍ରୀମସେନ ନାମଟି ତାର ଚେହେରାର ଅନୁରୂପ; କିନ୍ତୁ ତାହାର କାର୍ଯ୍ୟ ଏତେ ହୀନ କାହିଁକି ? ଖ୍ରୀମସେନର ବୀରତ୍ୱ ଏହାଠାରେ କାହିଁ ?" ସେ ତାହାକୁ ଡାକି କହିଲେ, "ଦେଖ, ତୁମକୁ ଦେଖିଲେ ଯେ କେହି ଜଣେ ବୀର ପୁରୁଷ ବୋଲି ମନେ କରିବ । ତୁମେ ଲୁଗା ବୁଣି ଏପରି କଷ୍ଟରେ ଜୀବନ ଯାପନ କରିବ କାହିଁକି ? ଚାଲ, ମୁଁ ତୁମକୁ କୌଣସି ରାଜାଙ୍କ ପାଖରେ ଜଣେ ବୀର ଯୋଦ୍ଧାରୂପେ ନିଯୁକ୍ତ କରାଇଦେବି । ତୁମେ ଯଥେଷ୍ଟ ବେତନ ଓ ପୁରସ୍କାର ପାଇବ ।"

ଖ୍ରୀମସେନ ଆପତ୍ତି କଲା, "ଯୋଦ୍ଧାର କାର୍ଯ୍ୟ ମୁଁ ଆଦୌ କରିପାରିବି ନାହିଁ । ଯୁଦ୍ଧଭୂଇଁ ମୁଁ ଦେଖିନାହିଁ । ଜୀବନରେ କେବେହେଲେ ହାତରେ ଖଣ୍ଡା ବା ଧନୁଶର ଧରିନାହିଁ । ଯୁଦ୍ଧର ନାମ ଶୁଣିଲେ ମୋର ରକ୍ତ ପାଣି ହୋଇଯାଏ ।"

ବୋଧିସତ୍ତ୍ୱ ବୁଝାଇ କହିଲେ, "ସେଥିପାଇଁ ତୁମେ ଚିନ୍ତା କର ନାହିଁ । ମୁଁ ତୁମର ପାଖେ ପାଖେ ରହିଥିବି । ରାଜା ତୁମକୁ ଯେଉଁ କାର୍ଯ୍ୟ କରିବାକୁ ଦେବେ, ମୁଁ ଅକ୍ଲେଶରେ ତାହା କରାଇ-

Digitized by srujanika@gmail.com

ଦେବ । ମୁଁ ତୁମର ଗୁରୁ ବୋଲି ପରିଚୟ ଦେବ । ତେଣୁ ମୁଁ ତୁମର ପାଖେ ପାଖେ ରହିବାରେ ଅସୁବିଧା ହେବ ନାହିଁ । ତୁମେ ଯେଉଁ ବେତନ ପାଇବ, ସେଥିରେ ଆମେ ଦୁହେଁଯାକ ସୁଖରେ ଚଳିପାରିବା ।”

ଭୀମସେନ ଏହି ପ୍ରସ୍ତାବରେ ରାଜି ହେବାରୁ ବୋଧିସତ୍ତ୍ୱ ତାହାକୁ ସଙ୍ଗରେ ନେଇ ବାରାଣସୀରେ ପହଞ୍ଚିଲେ । ସେ ତାହାକୁ ଆଗରେ ରଖି ଓ ପଛରେ ନିଜେ ଧନୁଶର ଧରି ରାଜପ୍ରାସାଦକୁ ଗଲେ ଓ ରାଜାଙ୍କର ସାକ୍ଷାତ ପ୍ରାର୍ଥନା କଲେ । ରାଜା ଡକାଇବାରୁ ଦୁହେଁଯାକ ରାଜାଙ୍କ ସମକ୍ଷରେ ଉପସ୍ଥିତ ହେଲେ । ରାଜା ଭୀମସେନକୁ ଆସିବାର କାରଣ ପଚାରିବାରୁ ସେ ବୋଧିସତ୍ତ୍ୱଙ୍କର ପରାମର୍ଶ ଅନୁସାରେ କହିଲା, “ମହାରାଜ ! ମୁଁ ଜଣେ ପ୍ରସିଦ୍ଧ ଧନୁର୍ଦ୍ଧର । ଏ ସମଗ୍ର ରାଜ୍ୟରେ ମୋର ସମକକ୍ଷ ଧନୁର୍ଦ୍ଧର ଆଉ କେହି ନାହାନ୍ତି । ମୁଁ କାର୍ଯ୍ୟପ୍ରାର୍ଥୀ । ମୋତେ ନିଯୁକ୍ତ କଲେ ମୁଁ ଆପଣଙ୍କ ରାଜ୍ୟକୁ ଶତ୍ରୁଠାରୁ ନିରାପଦ ରଖିପାରିବ ।”

ରାଜା ଭୀମସେନର ଆକୃତି ଦେଖି ସନ୍ତୁଷ୍ଟ ହୋଇଯାଇଥିଲେ । ସେ ତାହାର କଥାକୁ ସହଜେ ବିଶ୍ୱାସ କରିଗଲେ । ସେ ପଚାରିଲେ, “ତୁମେ କେତେ ବେତନ ନେବ ?” ଭୀମସେନ ଉତ୍ତର କଲା, “ମାସକୁ ଦୁଇସହସ୍ର ମୁଦ୍ରା ।” ରାଜା ଏଥିରେ ସ୍ୱୀକୃତ ହୋଇ ଭୀମସେନକୁ କାର୍ଯ୍ୟରେ ନିଯୁକ୍ତ କଲେ । ଏଡ଼େ ବଡ଼ ଜଣେ ବିଖ୍ୟାତ ବୀର ସହିତ କ୍ଷୁଦ୍ର ବାମନକାୟ ବୋଧିସତ୍ତ୍ୱଙ୍କୁ ଦେଖି ରାଜାଙ୍କର କୌତୂହଳ ହେଲା । ସେ ପଚାରିଲେ, “ତୁମ ସାଥିରେ ଏ ଲୋକଟି କିଏ ?” ଭୀମସେନ ଉତ୍ତର କଲା, “ସେ ମୋର ଗୁରୁ ।

Digitized by srujanika@gmail.com

ମୋ ପାଖେ ପାଖେ ଥାଏ; ମୋର ଅସ୍ତଶସ୍ତ ବୋହିନଏ ଓ ମୋର ଅନ୍ୟାନ୍ୟ କାର୍ଯ୍ୟ କରେ ।”

ଖେମସେନ ରାଜାଙ୍କଦ୍ୱାରା ନିଯୁକ୍ତ ହେଲା ପରେ ଦୁହିଁଙ୍କ ପାଇଁ ଏକାଠ ରହିବାର ବ୍ୟବସ୍ଥା କରାଗଲା । ରାଜା ଖେମସେନକୁ ଯାହା କିଛି କରିବାକୁ କହୁଥିଲେ, ପ୍ରକୃତରେ ତାହା ବୋଧିସତ୍ତ୍ୱ କରି-ଦେଉଥିଲେ । ତେଣୁ ଖେମସେନର ସାହସ ଓ ବୀରତ୍ୱ ବିଷୟରେ ରାଜା ଉଚ୍ଚ ଧାରଣା ପୋଷଣ କରୁଥିଲେ ଓ ସେ ଏହି ଉଚ୍ଚ ବେତନର ଯୋଗ୍ୟ ବୋଲି ମନେ କରୁଥିଲେ ।

ଏହି ସମୟରେ ରାଜ୍ୟର ଏକ ଅଂଶରେ ଗୋଟିଏ ବ୍ୟାଘ୍ରର ଉପଦ୍ରବ ହେଲା । ଅନେକ ଲୋକ ଏହାଦ୍ୱାରା ନିହତ ହେଲେ ଓ ପଥିକମାନେ ସେ ଅଞ୍ଚଳକୁ ଯିବାକୁ ଭୟ କଲେ । ରାଜା ଏହି ସମ୍ବାଦ ପାଇ ଖେମସେନକୁ କହିଲେ, “ଦେଖ, ରାଜ୍ୟରେ ଗୋଟାଏ ବାଘ ଉତ୍ପାତ କରୁଅଛି । ତାହାକୁ ବଧକରି ଲୋକଙ୍କୁ ନିରାପଦ ରଖିବାକୁ ହେବ ।”

ଖେମସେନ ହସି ହସି କହିଲା, “ମହାରାଜ ! ଏହା ମୋର କର୍ତ୍ତବ୍ୟ । ମୁଁ ବାଘକୁ ବଧକରି ବା ବାନ୍ଧିକରି ନେଇ ଆସିବି । ଆପଣ ଏଥିପାଇଁ ଚିନ୍ତା କରନ୍ତୁ ନାହିଁ ।”

ଖେମସେନ ଘରକୁ ଆସି ବୋଧିସତ୍ତ୍ୱଙ୍କୁ ରାଜାଙ୍କର ଉଦ୍ଦେଶ୍ୟ ଜଣାଇବାରୁ ସେ କହିଲେ, “ମୋର ଉପଦେଶ ଅନୁସାରେ କାର୍ଯ୍ୟ କର । ତୁମେ ଜଙ୍ଗଲକୁ ଯିବ; କିନ୍ତୁ ବାଘ ପାଖକୁ ଯିବ ନାହିଁ । ସେ ଅଞ୍ଚଳର ଲୋକଙ୍କୁ କହିବ—ରାଜାଙ୍କର ଆଦେଶ, ଦୁଇହଜାର ଲୋକ ଧନୁଶର ଧରି ବାଘକୁ ଘଉଡ଼ାଇବେ । ସେମାନେ କୋଳାହଳ କଲେ

ବାଘ ତା ଜାଗାରୁ ବାହାରିପଡ଼ିବ । ତୁମେ ଗୋଟିଏ ନିରାପଦ ସ୍ଥାନରେ ଲୁଚି ଶୋଇପଡ଼ିବ । ବାଘକୁ ଦେଖିଲେ ସେମାନେ ମାରି-ପକାଇବେ । ତୁମେ ଶୋଇ ରହି ଶୁଣୁଥିବ । ବାଘ ମଲାପରେ ତୁମେ କିଛି ଲଇ ଧରି ଲୋକଙ୍କୁ ଧମକ ଦେବ—'ରାଜାଙ୍କ ହୁକୁମ ଥିଲା, ବାଘକୁ ମୁଁ ବାନ୍ଧି ଘୋଷାଡ଼ି ଘୋଷାଡ଼ି ରାଜାଙ୍କ ପାଖକୁ ନେଇଥାନ୍ତି । ବାନ୍ଧିବା ପାଇଁ ଲଇ ଆଣିବାକୁ ମୁଁ ଯାଇଥିଲି । ଏଥିମଧ୍ୟରେ ତାକୁ କିଏ ମାରିଲା ? ଯେଉଁମାନେ ମାରିଛନ୍ତି, ସେମାନେ ଦଣ୍ଡ ପାଇବେ ।' ଏହା ଶୁଣି ସେମାନେ ଭୟରେ ତୁମକୁ ଅର୍ଥ ଦେଇ ସନ୍ତୁଷ୍ଟ କରି ପଳାଇବେ । ତୁମେ ମୃତ ବାଘକୁ ରାଜାଙ୍କୁ ଦେଖାଇ ତାଙ୍କଠାରୁ ମଧ୍ୟ ପୁରସ୍କାର ପାଇବ ।"

ଭୀମସେନ ଏହି ପରାମର୍ଶ ଅନୁସାରେ ବନକୁ ଯାଇ ଲୁଚି-ରହିଲା । ଲୋକେ ସହସ୍ର ସହସ୍ର ସଂଖ୍ୟାରେ ଜଙ୍ଗଲକୁ ବେଢ଼ି ଯାଇ ବାଘକୁ ମାରିପକାଇଲେ । ଭୀମସେନ ଲଇ ନେଇ ଲୋକଙ୍କୁ କହିଲା "ମୁଁ ବାଘକୁ ବାନ୍ଧିନେବା ପାଇଁ ଲଇ ଆଣିବାକୁ ଯାଇଥିଲି । ଏଥିମଧ୍ୟରେ ଯେଉଁମାନେ ବାଘକୁ ମାରିଛନ୍ତି, ସେମାନଙ୍କୁ ଦଣ୍ଡ ଦିଆଯିବ ।" ଲୋକେ ଭୟରେ ଭୀମସେନକୁ କିଛି ଅର୍ଥ ଦେଇ ପଳାଇଗଲେ । ଭୀମସେନ ମଲା ବାଘକୁ ନେଇ ରାଜାଙ୍କୁ ଦେଖାଇବାରୁ ରାଜା ତାହା ଉପରେ ସନ୍ତୁଷ୍ଟ ହୋଇ ନାନା ପୁରସ୍କାର ଦେଲେ ।

କିଛି ଦିନ ପରେ ରାଜ୍ୟରେ ଗୋଟିଏ ଅରଣା ମଇଁଷିର ଉପଦ୍ରବ ହେବାରୁ ତାହାକୁ ମାରିବାପାଇଁ ରାଜା ଭୀମସେନକୁ ଆଦେଶ ଦେଲେ । ଏଥର ମଧ୍ୟ ବୋଧିସତ୍ତ୍ୱଙ୍କ ଉପଦେଶ ଅନୁସାରେ କାର୍ଯ୍ୟ କରିବାରୁ ଲୋକେ ମଇଁଷିକୁ ମାରିପକାଇଲେ । ଲୋକଙ୍କୁ ଭୀମସେନ ଧମକ ଦେଲା—"ତୁମେ କାହିଁକି ମାରିଲ ? ମୁଁ ତାକୁ ଜୀଅନ୍ତା ବାନ୍ଧି

Digitized by srujanika@gmail.com

ଟାଣି ଟାଣି ରାଜାଙ୍କ ପାଖକୁ ନେଇଆନ୍ତି ।" ଲୋକେ ଭୟ କରି ଖ୍ରୀମସେନକୁ ଟଙ୍କାପଇସା ଦେଇ ପଳାଇଲେ । ଖ୍ରୀମସେନ ମଲ୍ଲ-ମହିଷିକୁ ଆଣି ରାଜାଙ୍କଠାରୁ ପୁରସ୍କାର ପାଇଲା ।

ଏହିପରି ଖ୍ରୀମସେନ ଓ ବୋଧିସତ୍ତ୍ୱ ରାଜାଙ୍କ ଅନୁଗ୍ରହ ପାଇ ସୁଖରେ ରହିଥାନ୍ତି । କିଛିଦିନ ପରେ ଖ୍ରୀମସେନ ଚିନ୍ତା କଲା, 'ରାଜାଙ୍କୁ ସନ୍ତୁଷ୍ଟ କରିବାରେ କିଛି କଷ୍ଟ ନାହିଁ । ମୁଁ ନିଜେ କଅଣ କାମ ଚଳାଇ ପାରିବି ନାହିଁ । ଏ ଲୋକଟାକୁ କାହିଁକି ବୃଥା ଧନ ଦେବି ?' ଏହିପରି ଭାବି ସେ ଆଉ ବୋଧିସତ୍ତ୍ୱଙ୍କୁ ଖାତିର କଲା ନାହିଁ । ତାଙ୍କୁ କହିଲା, "ତୁମର ସାହାଯ୍ୟ ମୋର ଦରକାର ନାହିଁ । ମୋ କାମ ମୁଁ ନିଜେ କରିପାରିବି ।" ବୋଧିସତ୍ତ୍ୱ ଏହା ଶୁଣି ନୀରବ ରହିଲେ ।

କିଛିଦିନ ପରେ ଅନ୍ୟ ଜଣେ ରାଜା ବହୁ ସୈନ୍ୟ ସେନା ବାରାଣସୀ ନଗରୀ ଅବରୋଧ କରି ରାଜାଙ୍କୁ କହିପଠାଇଲେ, "ମୋର ଅଧୀନତା ସ୍ୱୀକାର କରି ମୋତେ ରାଜ୍ୟ ଛାଡ଼ିଦେଇ ଚାଲିଯାଅ; ନୋହିଲେ ମୋ ସଙ୍ଗେ ଯୁଦ୍ଧ କରିବାକୁ ଆସ ।" ରାଜା ଖ୍ରୀମସେନକୁ ଆଦେଶ ଦେଲେ, "ଯାଅ, ଶତ୍ରୁମାନଙ୍କୁ ଯୁଦ୍ଧରେ ପରାସ୍ତ କରି ତଡ଼ିଦିଅ ।"

ବୋଧିସତ୍ତ୍ୱ ଦେଖିଲେ, ଏଥର ଖ୍ରୀମସେନର ମୃତ୍ୟୁ ନିଶ୍ଚିତ । ସେ ପୂର୍ବର ଅପମାନ ଭୁଲିଯାଇ ଖ୍ରୀମସେନକୁ ସାହାଯ୍ୟ କରିବାକୁ ସ୍ଥିରକଲେ । ଦୁହେଁଯାକ ଯୁଦ୍ଧପୋଷାକ ପିନ୍ଧି ଗୋଟିଏ ହାତୀ ଉପରେ ବସି ଯୁଦ୍ଧକୁ ବାହାରିଲେ । ରାଜାଙ୍କ ସୈନ୍ୟମାନେ ହାତୀକୁ ବେଢ଼ି ଚାଲିଲେ । ଯୁଦ୍ଧବାଦ୍ୟ ବାଜିଉଠିଲାକ୍ଷଣି ଖ୍ରୀମସେନ ଭୟରେ ଥରିବାକୁ ଲାଗିଲା । ବୋଧିସତ୍ତ୍ୱ କହିଲେ, "ଦେଖ ଖ୍ରୀମସେନ, ତୁମେ

Digitized by srujanika@gmail.com

ଭୟରେ ଏବେଶ କାତର ହେଲେ ଥର ଥର ତଳକୁ ଖସିପଡ଼ିବ । ହାତୀର ପାଦତଳେ ତୁମର ପ୍ରାଣ ଯିବ । ସାହସ ଦେଖାଅ ।” କିନ୍ତୁ ତାର ଭୟ ଦୂର ହେଲା ନାହିଁ । ସେ ହାତୀ ଉପରେ ମଳମୂତ୍ର ତ୍ୟାଗ କରିପକାଇଲା ।

ବୋଧିସତ୍ତ୍ୱ କହିଲେ, “କହେ। ଖ୍ରୀମସେନ ! ଖୁବ୍ ଗର୍ବ ତ କରୁଥିଲ ଯେ ନିଜ କାମ ନିଜେ କରିବ । ଏବେ ଏ କଅଣ ? ତୁମର ଗର୍ବ କୁଆଡ଼େ ଗଲା ? ଯାହା ହେଉ, ଭୟ କର ନାହିଁ । ମୁଁ ତୁମକୁ ରକ୍ଷା କରିବ ।” ସେ ଖ୍ରୀମସେନକୁ ଘରକୁ ପଠାଇଦେଇ ନିଜେ ଶତ୍ରୁ ବିରୁଦ୍ଧରେ ଯୁଦ୍ଧ ଚଳାଇଲେ । ଶତ୍ରୁସୈନ୍ୟ ମଧ୍ୟରେ ପ୍ରବେଶ କରି ସେ ଅନେକଙ୍କୁ ବଧ କଲେ ଓ ଶେଷରେ ଶତ୍ରୁ ରାଜାଙ୍କୁ ବନ୍ଦୀ କରି ବାରଣସୀ ରାଜାଙ୍କ ପାଖକୁ ନେଇ ଆସିଲେ ।

ଏବେ ବୋଧିସତ୍ତ୍ୱଙ୍କର ବୀରତ୍ୱ ଓ ସାହସ ଜଣାପଡ଼ିଗଲା । ରାଜା ତାଙ୍କୁ ପ୍ରଶଂସା କରି ବହୁ ପୁରସ୍କାର ଦେଲେ । ସେ ଖ୍ରୀସସେନକୁ ପ୍ରଚୁର ଧନ ଦେଇ ସ୍ୱଦେଶକୁ ପଠାଇଦେଲେ । ବୋଧିସତ୍ତ୍ୱ ଯେଉଁ ଧନ ପାଉଥିଲେ ତାହା ଦୀନ ଦରିଦ୍ରଙ୍କ ସେବାରେ ବ୍ୟୟ କରି ଦେଉଥିଲେ । ସତ୍‌କାର୍ଯ୍ୟ ସକାଶେ ସେ ମୃତ୍ୟୁପରେ ସ୍ୱର୍ଗକୁ ଗଲେ ।

***

## ମହାସାର ଜାତକ

ବ୍ରହ୍ମଦତ୍ତ ବାରଣସୀର ରାଜା ଥିବା ସମୟରେ ବୋଧିସତ୍ତ୍ୱ ସେଠାରେ ଜନ୍ମଗ୍ରହଣ କରିଥିଲେ । ସେ ଉପଯୁକ୍ତ ଶିକ୍ଷା ପାଇ ଦେଶରେ ଜଣେ ପ୍ରଧାନ ପଣ୍ଡିତ ହେଲେ । ରାଜା ତାଙ୍କୁ ନିଜର

Digitized by srujanika@gmail.com

ଜଣେ ମନ୍ତ୍ରୀରୂପେ ନିଯୁକ୍ତ କଲେ । ରାଜା ତାଙ୍କ କାର୍ଯ୍ୟରେ ସନ୍ତୁଷ୍ଟ ଥିଲେ ।

ଦିନେ ରାଜା ବହୁ ଅନୁଚରଙ୍କୁ ସଙ୍ଗରେ ଘେନି ଭ୍ରମଣ କରିବାକୁ ବାହାରିଲେ । ସେମାନେ ଗୋଟିଏ ବଣରେ ଉପସ୍ଥିତ ହୋଇ ସେଠାରେ ପୁଷ୍କରିଣୀଟିଏ ଦେଖି ତମ୍ବୁ ପକାଇଲେ । ପୁଷ୍କରିଣୀର ନିର୍ମଳ ଜଳ ଦେଖି ରାଜା ସେଥିରେ ସ୍ନାନ ଓ ସନ୍ତରଣ କରିବାକୁ ଇଚ୍ଛା କଲେ । ରାଜପରିବାରର ରମଣୀମାନେ ମଧ୍ୟ ସେହିପରି ସ୍ନାନ କରିବାକୁ ମନ କରି ନିଜ ନିଜର ଦେହରୁ ମୂଲ୍ୟବାନ ଅଳଙ୍କାର କାଢ଼ି ପେଡ଼ିରେ ପୂରାଇ ଦାସୀମାନଙ୍କ ପାଖେ ରଖିଦେଲେ । ରାଣୀ ମଧ୍ୟ ସେହିପରି ତାଙ୍କର ଅଳଙ୍କାର କାଢ଼ି ଗୋଟିଏ ପେଡ଼ିରେ ପୂରାଇଲେ ।

ସେତେବେଳେ ଗୋଟିଏ ବାନରୀ ଗଛ ଉପରେ ବସି ଏହା ଦେଖୁଥିଲା । ରାଣୀ ତାଙ୍କର ଗଳାରୁ ମୁକ୍ତାହାରଟି ଖୋଲି ପେଡ଼ିରେ ପୂରାଇବାର ଦେଖି ତାର ଏହି ହାର ନେବା ପାଇଁ ଭାରି ଲୋଭ ହେଲା । ରାଣୀ ତାଙ୍କ ଅଳଙ୍କାର ପେଡ଼ି ଜଣେ ଦାସୀ ଜିମାରେ ଦେଇ ଜଳ ନିକଟକୁ ଗଲେ । ବାନରୀ ଦାସୀକୁ ଲକ୍ଷ୍ୟ କରିଥାଏ । କିଛି ସମୟ ପରେ ଦାସୀ ଢୁଲାଇବାକୁ ଲାଗିଲା । ଏହି ସୁଯୋଗ ଦେଖି ବାନରୀ ମୁହୂର୍ତ୍ତକ ଭିତରେ ତଳକୁ ଡେଇଁପଡ଼ି ପେଡ଼ିରୁ ହାରଟିକୁ ନେଇ ପୁଣି ଗଛ ଉପରକୁ ଉଠିଗଲା । ସେ ଭାବିଲା, ଅନ୍ୟ ବାନର-ମାନେ ହାରଟିକୁ ଦେଖିଲେ ତାହାଠାରୁ ଛଡ଼ାଇନେବେ । ତେଣୁ ସେ ଅତି ଶୀଘ୍ର ତାହାକୁ ଗଛର ଗୋଟିଏ କୋରଡ଼ରେ ଲୁଚାଇଦେଇ ନିଜେ ପାଖରେ ଜଗି ବସିରହିଲା ।

କିଛି ସମୟ ପରେ ସେହି ଦାସୀର ନିଦ ଭାଙ୍ଗିଗଲା । ସେ ଦେଖିଲା ଯେ ରାଣୀଙ୍କର ହାର ନାହିଁ । କିଏ ହାର ନେଇଛି ସେ

Digitized by srujanika@gmail.com

ଦେଖି ନ ଥିଲା । ସେ ଶୋଇପଡ଼ିଥିଲା କହିଲେ ରାଣୀ ତାକୁ ଦଣ୍ଡ ଦେବେ । ତେଣୁ ସେ ମିଛରେ ପାଟି କଲା, "କିଏ ଜଣେ ରାଣୀଙ୍କ ହାର ନେଇ ପଳାଇଯାଉଛି ।"

ତାର ପାଟି ଶୁଣି ରାଜାଙ୍କ ପ୍ରହରୀମାନେ ଚୋରକୁ ଧରିବା ପାଇଁ ଚାରିଆଡ଼କୁ ଦୌଡ଼ିଲେ । ହାର ଚୋରିଯାଇଥିବା ଶୁଣି ରାଜା ମଧ୍ୟ ରାଗିଯାଇ କହିଲେ, "ଚୋରକୁ ଧରିଆଣ । ତାକୁ ଦଣ୍ଡ ଦିଆଯିବ ।"

ପ୍ରହରୀମାନେ ବଣଯାକ ଖୋଜିଗଲେ । ସେତିକିବେଳକୁ ଜଣେ ମଫସଲ ଲୋକ ବଣ ଭିତରେ ଯାଉଥିଲା । ପ୍ରହରୀମାନଙ୍କର ଗୋଳମାଳ ଶୁଣି ସେ ଭୟରେ ଦୌଡ଼ିବାକୁ ଲାଗିଲା । ପ୍ରହରୀମାନେ ତାକୁ ଚୋର ବୋଲି ଧରିପକାଇଲେ ଓ ବହୁତ ଗାଳିମାଡ଼ ଦେଇ ରାଜାଙ୍କ ପାଖକୁ ନେଇଆସିଲେ ।

ଲୋକଟି ଭାବିଲା, "ଏମାନେ ମୋତେ ଚୋର ମନେକରି ମାଡ଼ ଦେଉଛନ୍ତି । ମୁଁ ହାର ନେଇନାହିଁ ବୋଲି କହିଲେ ଆହୁରି ମାଡ଼ ଦେବେ । ତେଣୁ ମୁଁ ଚୋରି କରି ନ ଥିଲେ ମଧ୍ୟ କରିଛି ବୋଲି କହି ମାଡ଼ରୁ ରକ୍ଷା ପାଇଯିବି ।" ଏହିପରି ବିଚାରି ସେ ରାଜାଙ୍କ ଆଗରେ କହିଲା, "ମହାରାଜ ! ମୁଁ ହାର ଚୋରାଇ ନେଇଛି ।"

ରାଜା କହିଲେ, "ହାର କେଉଁଠି ରଖିଛୁ କହ ?" ସେ କହିଲା, "ହଜୁର ! ମୁଁ ଗରିବ ଲୋକ । ମୋ ଜୀବନରେ ଏକାଠି ଟଙ୍କାଟାଏ ବୁଝା ଦେଖିନାହିଁ । ମୁକ୍ତାହାରଟାଏ ମୁଁ କଅଣ କରନ୍ତି ! ଜଣେ ଶେଠୀ ମୋତେ ଚୋରାଇବାକୁ କହିଥିଲା । ମୁଁ ହାର ନେଇ ତାକୁ ଦେଇଛି ।"

Digitized by srujanika@gmail.com

ରାଜା ଶେଠୀଙ୍କୁ ଡକାଇ ପଚାରିଲେ, "ଏ ଗରିବ ଲୋକ ତୁମକୁ ଯେଉଁ ହାର ଦେଇଥିଲା, ତାକୁ କ'ଣ କଲ ? ଏହିକ୍ଷଣି ହାର ଦିଅ, ନ ହେଲେ ତୁମକୁ ଶୂଳ ଦିଆଯିବ ।"

ଶେଠୀ ଭାବିଲା, "ରାଜା ମୋତେ ଚୋର ବୋଲି ସ୍ଥିର କରି ଶୂଳରେ ବସାଇବାକୁ କହୁଛନ୍ତି । ମୁଁ ମନାକଲେ କ'ଣ ହେବ; ମାନିଯିବା ଭଲ ।" ସେ କହିଲା, "ମହାରାଜ ! ମୁଁ ହାରଟିକୁ ନେଇ ରାଜପୁରୋହିତଙ୍କୁ ଦେଇଛି ।"

ପୁରୋହିତଙ୍କୁ ଡକାଇ ପଚାରିବାରୁ ସେ କହିଲେ, "ମୁଁ ହାରଟିକୁ ଜଣେ ଓସ୍ତାଦ୍‌ଙ୍କୁ ଦେଇଛି ।" ଓସ୍ତାଦ୍‌ଙ୍କୁ ପଚାରନ୍ତେ ସେ କହିଲେ, "ମୁଁ ଜଣେ ବେଶ୍ୟାକୁ ଦେଇଛି ।"

ବେଶ୍ୟା ଧରାହୋଇ ଆସିବାରୁ ରାଜା ପଚାରିଲେ, "ଓସ୍ତାଦ୍ ତୋତେ ଯେଉଁ ହାର ଦେଇଥିଲେ, କେଉଁଠି ରଖିଛୁ ଆଣି ଦେ ।" କିନ୍ତୁ ବେଶ୍ୟା କହିଲା, "ମହାରାଜ, ମୋତେ କେହି କୌଣସି ହାର ଦେଇନାହାନ୍ତି । ମୁଁ ହାର ଆଣିଦେବି କପରି ?"

ଗରିବ ଲୋକଟି ସହିତ ଶେଠୀ, ପୁରୋହିତ, ଓସ୍ତାଦ୍ ଓ ବେଶ୍ୟାଙ୍କୁ ବନ୍ଦୀ କରି ମନ୍ତ୍ରୀମାନଙ୍କ ଜିମାରେ ରଖାଗଲା । ସନ୍ଧ୍ୟା ହୋଇଆସୁଥିବାରୁ ସେଦିନ କିଛି ସ୍ଥିର ହୋଇ ପାରିଲା ନାହିଁ । ରାଜା ନଅରକୁ ଫେରିଗଲେ ।

ସମସ୍ତ ଘଟଣା ଶୁଣିଲା ପରେ ବୋଧିସତ୍ତ୍ୱ ଭାବିଲେ, "ରାଜାଙ୍କର ଶିବିର ଚାରିପାଖେ ପ୍ରହରୀମାନେ ଜଗିରହିଥିଲେ । ତାହା ଭିତରକୁ ଆସି କେହି ଚୋରି କରିଥିବା ଅସମ୍ଭବ । ଗରିବ ଲୋକଟି ଶିବିର ବାହାରୁ ଧରାପଡ଼ିଛି । ସେ ଦଣ୍ଡଭୟରେ ଶେଠୀଙ୍କୁ ହାର

Digitized by srujanika@gmail.com

ଦେଇଛନ୍ତି ବୋଲି କହୁଛନ୍ତି । ସେହିପରି ଶେଠୀ ରାଜପୁରୋହିତଙ୍କୁ, ପୁରୋହିତେ ଓସ୍ତାଦ୍‌ଙ୍କୁ ଓ ଓସ୍ତାଦ୍ ବେଶ୍ୟାକୁ ଦେଇଛନ୍ତି ବୋଲି ମିଛରେ କହୁଛନ୍ତି । ପ୍ରତ୍ୟେକ ନିଜକୁ ରକ୍ଷା କରିବା ପାଇଁ ମିଥ୍ୟାର ଆଶ୍ରୟ ନେଇଛନ୍ତି । ବରଂ ସେଠାର ଗଛମାନଙ୍କରେ ଅନେକ ବାନର ବସିଥିଲେ । ସେମାନଙ୍କ ମଧ୍ୟରୁ କେହି ହାର ନେଇଥିବ ।"

ଏହିପରି ସ୍ଥିର କରି ବୋଧିସତ୍ତ୍ୱ ରାଜାଙ୍କୁ ଜଣାଇଲେ, "ମହାରାଜ ! ଏ ପାଞ୍ଚଜଣ ବନ୍ଦୀଙ୍କୁ ମୋତେ ସମର୍ପଣ କରିଯାଉ । ମୁଁ ସେମାନଙ୍କୁ ପରୀକ୍ଷା କରି ପ୍ରକୃତ ଦୋଷୀକୁ ବାହାର କରିଦେବି ।" ରାଜା କିଛି ସ୍ଥିର କରି ନ ପାରି ଚିନ୍ତିତ ଥିଲେ । ସେ ଆନନ୍ଦରେ ବୋଧିସତ୍ତ୍ୱଙ୍କ ପ୍ରସ୍ତାବରେ ସ୍ୱୀକୃତ ହୋଇଗଲେ ।

ବୋଧିସତ୍ତ୍ୱ ସେମାନଙ୍କୁ ଗୋଟିଏ ଘରେ ରଖିବା ପାଇଁ ପ୍ରହରୀମାନଙ୍କୁ ଆଦେଶ ଦେଇ କହିଲେ, "ତୁମେମାନେ ଲୁଚି ରହି ସେମାନଙ୍କର କଥାବାର୍ତ୍ତା ଶୁଣୁଥିବ । କିଏ କଅଣ କହୁଥିଲା, କାଲି ସକାଳେ ମୋତେ ଜଣାଇବ ।"

ରାତିରେ ଶେଠୀ ଗରିବ ଲୋକଟିକୁ କହିଲା, "ଆରେ ଦୁଷ୍ଟ, ତୋର ମୋର ଏଥିପୂର୍ବରୁ କେବେ ଦେଖା ହୋଇଥିଲା ? କହ ଦେଖି, ତୁ କେତେବେଳେ ହାର ଆଣି ମୋତେ ଦେଲୁ ?"

ସେ ଉତ୍ତର କଲା, "ଆଜ୍ଞା, ଦେଖୁଛନ୍ତି ମୁଁ କେଡ଼େ ଗରିବ ଲୋକ ! ମୋ ଘରେ ପିତଳର ମୁଦିଟାଏ ସୁଦ୍ଧା ନାହିଁ । ମୁକ୍ତାହାର କିଏ, ମୁଁ କିଏ ? ମୋ ଜନ୍ମରେ ମୁଁ ମୁକ୍ତା ଦେଖିନାହିଁ । ପହରୀବାଲାଙ୍କ ମାଡ଼ରୁ ରକ୍ଷା ପାଇବା ପାଇଁ ଆପଣଙ୍କର ନାଆଁକୁ ଆଶ୍ରା ନେଲି । ନୋହିଲେ ମୋର ପ୍ରାଣ ରହି ନ ଥାନ୍ତା ।"

Digitized by srujanika@gmail.com

ପୁରୋହିତେ ଶେଠୀଙ୍କୁ ପଚାରିଲେ, "ନେଲକଣ୍ଠ ଆପଣଙ୍କୁ ହାର ଦେଇ ନ ଥିଲା । ତେବେ ଆପଣ କିପରି କହିଲେ ଯେ ହାର ମୋତେ ଦେଇଅଛନ୍ତି ?"

ଶେଠୀ କହିଲେ, "ମୁଁ ଏପରି କହିବାର କାରଣ ଅଛି । ରାଜାଙ୍କ ପାଖେ ମୋର ଯେପରି ଖାତିର ଅଛି, ଆପଣଙ୍କର ମଧ୍ୟ ସେହିପରି ଖାତିର ଅଛି । ଆମେ ଦୁହେଁ ଏ ଚୋରିରେ ଲିପ୍ତ ଅଛୁ ବୋଲି କହିଲେ ରାଜା ଦୁହିଁଙ୍କୁ ଛାଡ଼ିଦେବେ ବୋଲି ଭାବି ମୁଁ ମିଛରେ ସେପରି କହିଲି ।"

ଓସ୍ତାଦ୍ ପୁରୋହିତଙ୍କୁ କହିଲେ, "ଆପଣ ବ୍ରାହ୍ମଣ ପଣ୍ଡିତ, ରାଜା ଆପଣଙ୍କୁ ମାନ୍ୟ କରନ୍ତି । କହନ୍ତୁ, ଆପଣ କେତେବେଳେ ମୋତେ ହାର ଦେଇଥିଲେ ?"

ପୁରୋହିତ ଉତ୍ତର କଲେ, "ଆପଣଙ୍କୁ ମୁଁ ହାର ଦେଇଥାନ୍ତି କାହିଁ ? ହାର ତ ମୋତେ କେହି ଦେଇ ନ ଥିଲେ । କେବଳ ଆପଣ ଗୋଟାଏ କିଛି ଉପାୟ ବାହାର କରିପାରିବେ ବୋଲି ଆପଣଙ୍କ ନାଆଁ କହିଦେଲି ।"

ବେଶ୍ୟା ଓସ୍ତାଦ୍‌ଙ୍କୁ କହିଲା, "ଆପଣ ଭଦ୍ରଲୋକ ହୋଇ ଏଡ଼େ ବଡ଼ ମିଛ କଥା କହିଲେ କିପରି ? ଗୋଟାଏ ନିରୀହ ସ୍ତ୍ରୀଲୋକ ଉପରେ ଅପବାଦ ଲଦିବାକୁ ଟିକିଏ ଲଜ୍ଜା ହେଲା ନାହିଁ ?"

ଓସ୍ତାଦ୍ କହିଲେ, "ମୋ ଉପରେ ରାଗିଲେ ଲାଭ କଅଣ ? ଉପସ୍ଥିତ ବିପଦରୁ ରକ୍ଷା ପାଇବା ପାଇଁ ସେପରି ମିଛ କହିଦେଇ-ଥିଲି । ଏବେ ପାଞ୍ଚଜଣଙ୍କର ଅବସ୍ଥା ସମାନ । ଆପଣା ଭିତରେ କଳି କରି କି ଲାଭ ?"

Digitized by srujanika@gmail.com

ସକାନ୍ତୁ ପ୍ରହରୀମାନେ ଆସି ବୋଧିସତ୍ତ୍ୱଙ୍କୁ ସେମାନଙ୍କର ଭିତର କଥାବାର୍ତ୍ତା ଜଣାଇଲେ । ଏବେ ତାଙ୍କର ଧ୍ରୁବ ଧାରଣା ହେଲା ଯେ ଏ ପାଞ୍ଚଜଣଯାକ ନିର୍ଦ୍ଦୋଷ । କୌଣସି ବାନରୀ କୌତୂହଳାକ୍ରାନ୍ତ ହୋଇ ହାରଟିକୁ ନେଇଅଛି । ଆଗେ କପଟରେ ହାରଟିକୁ ଉଦ୍ଧାର କରିବାକୁ ହେବ ।

ଏହା ସ୍ଥିର କରି ବୋଧିସତ୍ତ୍ୱ କେତେଗୁଡ଼ିଏ କାଚର ହାର ତିଆରି କରାଇଲେ । ଲୋକମାନଙ୍କ ଦ୍ୱାରା ରାଜାଙ୍କ ଶିବିର ନିକଟରୁ ଗୁଡ଼ିଏ ବାନରଙ୍କୁ ଧରାଇଆଣି ସେମାନଙ୍କ ଗଳାରେ ଏହି ହାରକୁ ପିନ୍ଧାଇ ପୁଣି ସେମାନଙ୍କୁ ଛାଡ଼ିଦେଲେ । ବୋଧିସତ୍ତ୍ୱଙ୍କ ଆଦେଶରେ ରାଜାଙ୍କର ଲୋକେ ବାନରମାନଙ୍କୁ ଜଗିରହିଲେ ।

ଯେଉଁ ବାନରୀ ମୁକ୍ତାହାର ନେଇଥିଲା, ସେ ତାକୁ ଗଛ କୋରଡ଼ରେ ରଖି ଜଗି ବସିଥିଲା । କେତେକ ବାନର ଓ ବାନରୀ ନିଜ ନିଜର ହାର ପିନ୍ଧି ତା ପାଖକୁ ଯାଇ କହିଲେ, "ଦେଖ୍, ଆମର କେଡ଼େ ସୁନ୍ଦର ହାର । ତୋର ହାର ନାହିଁ ।"

ସେ ଏ ଅପମାନ ସହିପାରିଲା ନାହିଁ । ସେ କହିଲା, "ତୁମେ ଏ କି ହାର ଦେଖାଉଛ ? ଏଗୁଡ଼ାକ ହେଉଛି କାଚର । ମୋର ଅସଲ ମୁକ୍ତାହାର ଅଛି ।" ଏହା କହି ସେ କୋରଡ଼ରୁ ମୁକ୍ତାହାର ବାହାର କରି ଆପଣାର ଗଳାରେ ଲମ୍ବାଇଦେଲା । ରାଜାଙ୍କ ଲୋକେ ଏହା ଦେଖି ତାକୁ ଭୟ ଦେଖାଇବାରୁ ସେ ହାରଟି ଫିଙ୍ଗିଦେଇ ପଳାଇଗଲା ।

ଏହି ଉପାୟରେ ବୋଧିସତ୍ତ୍ୱ ହାରଟିକୁ ବାନରୀଠାରୁ ଉଦ୍ଧାର କରି ରାଜାଙ୍କୁ ଦେଇ କହିଲେ, "ମହାରାଜ ! ଏଇ ଦେଖନ୍ତୁ ସେ ମୁକ୍ତାହାର । ଶିବିର ନିକଟରେ ଗୋଟିଏ ବାନରୀ ଆସି ହାରକୁ

Digitized by srujanika@gmail.com

ନେଇ ଚେଛ କୋରଡ଼ରେ ରଖିଥିଲ । ଏ ପାଞ୍ଚଜଣଯୋକ ବନ୍ଦୀ ସମ୍ପୂର୍ଣ୍ଣ ନର୍ଦ୍ଦୋଷ ।"

ରାଜା ବିସ୍ମିତ ହୋଇ ପଚାରିଲେ, "ତୁମେ କିପରି ହାରଟିକୁ ଉଦ୍ଧାର କଲ ? କିପରି ଜାଣିଲ ଯେ ଏମାନେ ନର୍ଦ୍ଦୋଷ ?"

ବୋଧିସତ୍ତ୍ୱ ସମସ୍ତ ଘଟନା ବର୍ଣ୍ଣନା କରିବାରୁ ରାଜା ଅତ୍ୟନ୍ତ ସନ୍ତୁଷ୍ଟ ହେଲେ ଓ ବୋଧିସତ୍ତ୍ୱଙ୍କ ବୁଦ୍ଧିର ପ୍ରଶଂସା କରି କହିଲେ, "ବାସ୍ତବରେ ତୁମେ ହିଁ ମନ୍ତ୍ରୀ ହେବାର ଉପଯୁକ୍ତ । ଯୁଦ୍ଧବେଳେ ସାହସୀ ଯୋଦ୍ଧାମାନେ ରାଜାଙ୍କର ସହାୟ । ପରାମର୍ଶଦାତାଙ୍କ ସ୍ଥିର ବୁଦ୍ଧି ଆବଶ୍ୟକ । କିନ୍ତୁ ବିପଜ୍ଜନକ ପରିସ୍ଥିତି ହେଉଥିଲେ ଆପଣଙ୍କ ଭଳି ବିଜ୍ଞ ଲୋକଙ୍କର ବିଚାର ବୁଦ୍ଧି ଉପରେ ନିର୍ଭର କରିବାକୁ ହେବ ।"

ଏହିପରି କହି ରାଜା ବୋଧିସତ୍ତ୍ୱଙ୍କୁ ବିବିଧ ଉପହାର ଦେଇ ସମ୍ମାନିତ କଲେ ଓ ତାଙ୍କର ପରାମର୍ଶ ଅନୁସାରେ ରାଜ୍ୟ ଶାସନ କରିବାକୁ ଲାଗିଲେ । ...

## ମହାକପି ଜାତକ

ଏକସମୟରେ ବୋଧିସତ୍ତ୍ୱ ଗୋଟିଏ ବାନରରୂପେ ଜନ୍ମିଥିଲେ । ହିମାଳୟ ପ୍ରଦେଶର ଏକ ବିଶାଳ ବନ ତାଙ୍କର ଜନ୍ମସ୍ଥାନ ଥିଲା । କାଳକ୍ରମେ ସେ ବାଲ୍ୟବୟସ ଅତିକ୍ରମ କରି ଯୌବନରେ ପଦାର୍ପଣ କଲେ । ସେ ଖୁବ୍ ବଳିଷ୍ଠ ଓ କାର୍ଯ୍ୟକ୍ଷମ ଥିଲେ । ତେଣୁ

Digitized by srujanika@gmail.com

ବନର ବାନରମାନେ ତାଙ୍କୁ ଯୂଥପତିରୂପେ ଗ୍ରହଣ କଲେ । ସେ ଯେଉଁ ଦଳର ଅଧିପତି ଥିଲେ ସେଥିରେ ଅଶୀସହସ୍ର ବାନର ଥିଲେ ।

ବନ ମଧ୍ୟରେ ଗଙ୍ଗା ନଦୀତଟରେ ଗୋଟିଏ ଆମ୍ବଗଛ ଥିଲା । ଏହି ଗଛଟି ଆକାରରେ ଅତି ବୃହତ୍ ଥିଲା ଓ ଏହାର ଶାଖାଗୁଡ଼ିକ ବହୁଦୂର ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଘନ ପତ୍ର ଥିବାରୁ ଏହାର ଶୀତଳ ଛାୟାରେ ବାନରମାନେ ବିଶ୍ରାମ ନେଉଥିଲେ । ଏହାର ଫଳଗୁଡ଼ିକ ବୃହଦାକାର ଥିଲା ଓ ସେଗୁଡ଼ିକର ସ୍ୱାଦୁ ଅପୂର୍ବ ଥିଲା । ବାନରମାନେ ଏହାର ଫଳ ଭକ୍ଷଣ କରି ସୁଖରେ କାଳଯାପନ କରୁଥିଲେ ।

ଏହି ଗଛର ଗୋଟିଏ ଶାଖା ଗଙ୍ଗା ନଦୀର ଗର୍ଭଆଡ଼କୁ ବିସ୍ତୃତ ଥିଲା ଓ ଏହି ଶାଖାର ଫଳ ପାଚିଲେ ସେଗୁଡ଼ିକ ନଦୀଜଳରେ ପଡ଼ୁଥିଲା । ଦିନେ ବୋଧିସତ୍ତ୍ୱ ନିଜର ଦଳ ସହିତ ଏହି ଗଛର ଫଳ ଭକ୍ଷଣ କରୁଥିବା ସମୟରେ ଚିନ୍ତା କଲେ, "ନଦୀ ଉପରେ ଥିବା ଏହି ଶାଖାର ଫଳ ଦିନେ ଆମର ବିପଦ ଘଟାଇପାରେ । କାରଣ ଏହାର ପାଚିଲା ଫଳ ନଦୀଜଳରେ ପଡ଼ିଲେ ତାହା ସ୍ରୋତରେ ଭାସିଯାଇ ଦୂରରେ କୌଣସି ସ୍ଥାନରେ ଲାଗିବ । ତାହାର ଆକାର, ସୁଗନ୍ଧ ଓ ସ୍ୱାଦୁ ଜାଣିପାରିଲେ ଲୋକେ ତାର ଅନୁସନ୍ଧାନ କରି ଏଠାକୁ ଆସି ଆମକୁ ବିତାଡ଼ିତ କରି ବା ବଧ କରି ଏହାର ଫଳସବୁ ନେଇଯିବେ ।" ତେଣୁ ସେ ଦଳର ସମସ୍ତ ବାନରଙ୍କୁ କହିଲେ, "ଦେଖ, ଏ ଯେଉଁ ଶାଖାଟି ନଦୀ ଉପରକୁ ଓହଳିପଡ଼ିଛି, ସେଥିରେ ଯେପରି ଗୋଟିଏ ହେଲେ ଫଳ ନ ରହେ ସେଥିର ଚେଷ୍ଟା କରିବାକୁ ହେବ । ସେଥିରେ କଷି ଧରିବାମାତ୍ରେ ତୁମେମାନେ ସେଗୁଡ଼ିକୁ ନଷ୍ଟ କରିଦେବ । ପାଚିବା ପର୍ଯ୍ୟନ୍ତ ଗୋଟିଏ ସୁଦ୍ଧା ଫଳ ସେଥିରେ ରହିବାକୁ ଦେବ ନାହିଁ ।"

Digitized by srujanika@gmail.com

ବାନରମାନେ ଦଳପତି ବୋଧିସତ୍ତ୍ୱଙ୍କର ଆଜ୍ଞାବନ୍ଧ ଓ ଅନୁଗତ ଥିବାରୁ ତାଙ୍କର ପରାମର୍ଶ ମାନି ଚଳିଲେ ଓ ଉକ୍ତ ଶାଖାରେ ଆମ୍ବକଷି ହେଲମାତ୍ରେ ସେଗୁଡ଼ିକୁ ନଷ୍ଟ କରିଦେଉଥିଲେ ।

ବାନରମାନେ ଶାଖାର ସମସ୍ତ ଅଂଶ ପରୀକ୍ଷା କରି ସମସ୍ତ ଆମ୍ବକଷି ନଷ୍ଟ କରି ଦେଲେହେଁ ଦୈବାତ୍ ଗୋଟିଏ କଷି ପତ୍ର ଗହଳରେ ପିମ୍ପୁଡ଼ି ବସାରେ ଥିବାରୁ ତାହା ଉପରେ ସେମାନଙ୍କ ଦୃଷ୍ଟି ପଡ଼ିଲା ନାହିଁ । ସେହି କଷିଟି କ୍ରମେ କ୍ରମେ ବଢ଼ି ଏକ ବୃହତ୍ ଆମ୍ବରେ ପରିଣତ ହେଲା ଓ ଯଥାସମୟରେ ପାଚି ଗଙ୍ଗାଜଳରେ ଝଡ଼ିପଡ଼ିଲା । ଫଳଟି ଭସି ଭସି ବାରାଣସୀ ଘାଟ ନିକଟରେ ପହଞ୍ଚିଲା । ସେତେବେଳକୁ ବାରାଣସୀର ରାଜା ସେହି ଘାଟରେ ସ୍ନାନ କରୁଥିଲେ । ତାଙ୍କର ପାଖଲୋକେ ଏହି ବଡ଼ିଆ ଫଳଟିକୁ ଜଳରୁ ଉଠାଇ ନେଇ ରାଜାଙ୍କୁ ଦେଖାଇଲେ । ରାଜା ପଚାରିଲେ, "ଏଇଟି କି ଫଳ ?"

ଲୋକେ ଉତ୍ତର କଲେ, "ଆମେମାନେ ଏଥିପୂର୍ବରୁ ଏପରି ଫଳ ଦେଖି ନ ଥିଲୁ । ହୁଏତ ଶବରମାନେ ଜାଣିଥିବେ ।"

ରାଜାଙ୍କ ଆଦେଶରେ ଶବରମାନେ ଫଳଟିକୁ ପରୀକ୍ଷା କରି କହିଲେ, "ମହାରାଜ ! ଏ ଗୋଟିଏ ଆମ୍ବ ।" ରାଜା ଫଳଟିକୁ କାଟି ପ୍ରଥମେ ଶବରମାନଙ୍କୁ ଚାଖିବାକୁ ଦେଲେ । ସେମାନେ କହିଲେ ଯେ ଏହା ସାଧାରଣ ଆମ୍ବ ନୁହେଁ । ଏହାର ସୁଗନ୍ଧ ଓ ସ୍ୱାଦ ଅପୂର୍ବ । ରାଜା ନିଜର ମନ୍ତ୍ରୀ ଓ ଅନୁଚରମାନଙ୍କୁ ମଧ୍ୟ ଏଥିରୁ ଟିକିଏ ଟିକିଏ ଚାଖିବାକୁ ଦେଲେ । ସେମାନେ ଶବର-ମାନଙ୍କ ମତକୁ ସମର୍ଥନ କଲେ । ଶେଷରେ ରାଜା ନିଜେ ଫଳଟିର ଅବଶିଷ୍ଟ ଅଂଶକୁ ଖାଇ ଏହାର ଅପୂର୍ବ ସ୍ୱାଦୁ ଓ ଗନ୍ଧରେ ମୁଗ୍ଧ

Digitized by srujanika@gmail.com

ହୋଇଗଲେ, ଏହି ଫଳର ବୃକ୍ଷଟିକୁ ଆବିଷ୍କାର କରିବା ପାଇଁ ରାଜା ଅଧୀର ହୋଇପଡ଼ିଲେ ।

ସେ କେତେଗୁଡ଼ିଏ ନୌକା ସଂଗ୍ରହ କରି ସେଥିରେ ନିଜର ଅନୁଚର ତଥା ବନବାସୀ ଶବରମାନଙ୍କୁ ନେଇ ସ୍ରୋତର ପ୍ରତିକୂଳରେ ଯାତ୍ରା କଲେ । କେତେକ ଦିନ ପର୍ଯ୍ୟନ୍ତ ଯିବା ପରେ ସେମାନେ ଉକ୍ତ ଆମ୍ବଗଛ ଦେଖିପାରିଲେ । ରାଜା ଏହି ବୃକ୍ଷ-ମୂଳରେ ଆସନ ପକାଇ ବସିଲେ ଓ ତାଙ୍କର ଅନୁଚରମାନେ ବୃକ୍ଷମୂଳରୁ ପକ୍ୱଫଳ ସଂଗ୍ରହ କରିବାରେ ଲାଗିଲେ । ଏହି ଫଳ ଖାଇ ସମସ୍ତେ ପରିତୃପ୍ତ ହେଲେ ଓ କିଛି ସମୟ ପରେ ନିଦ୍ରାଭିଭୂତ ହୋଇପଡ଼ିଲେ ।

ବୋଧିସତ୍ତ୍ୱ ରାତି ଅର୍ଦ୍ଧ ସମୟରେ ନିଜର ଦଳ ସହିତ ଫେରିଆସି ଦେଖିଲେ, ତାଙ୍କ ପ୍ରିୟ ଆମ୍ବଗଛ ମୂଳେ ଶତ ଶତ ଲୋକ ଶୋଇରହିଛନ୍ତି । ବାନରମାନେ ଗଛରେ ଚଢ଼ି ଆମ୍ବ ଖାଇବାରେ ଲାଗିଲେ । ସେମାନଙ୍କର ରବରେ ରାଜାଙ୍କର ନିଦ୍ରାଭଙ୍ଗ ହେବାରୁ ସେ ଅନ୍ୟମାନଙ୍କୁ ଉଠାଇ ଆଦେଶ ଦେଲେ, "ଏ ବୃକ୍ଷର ଚାରିପାଖେ ଜଗିରହି ଧନୁଶର ପ୍ରଭୃତି ସାହାଯ୍ୟରେ ଏ ବାନରମାନଙ୍କୁ ସମୂଳେ ଧ୍ୱଂସ କର ।" ତାଙ୍କ ଆଦେଶରେ ଲୋକେ ଧନୁଶର ଧରି ବାନରମାନଙ୍କୁ ବଧ କରିବାକୁ ପ୍ରସ୍ତୁତ ହୋଇଗଲେ ।

ବାନରମାନେ ପ୍ରାଣଭୟରେ ବୋଧିସତ୍ତ୍ୱଙ୍କୁ କହିଲେ, "ଆମ-ମାନଙ୍କର ପ୍ରାଣରକ୍ଷାର ଉପାୟ ଦେଖାଯାଉ ନାହିଁ । ରାଜାଙ୍କ ଲୋକମାନେ ଧନୁଶର ନେଇ ଗଛଟିକୁ ବେଢ଼ି ରହିଅଛନ୍ତି ।"

Digitized by srujanika@gmail.com

ଅନୁଚରମାନେ ପ୍ରାଣଭୟରେ କାତର ହୋଇଥିବାର ଦେଖି ବୋଧିସତ୍ତ୍ୱ ସେମାନଙ୍କୁ ଆଶ୍ୱାସନା ଦେଇ କହିଲେ, "ଭୟ ହେଉଛି କାପୁରୁଷର ଲକ୍ଷଣ । ତୁମେମାନେ ସାହସପୂର୍ବକ ମୋର ଉପଦେଶ ପାଳନ କର । ମୁଁ ତୁମମାନଙ୍କର ଜୀବନ ରକ୍ଷା କରିପାରିବ । ଧୈର୍ଯ୍ୟ ଧରି ଅଳ୍ପ ସମୟ ଅପେକ୍ଷା କର ।"

ଏହା କହି ସେ ବୃକ୍ଷର କାଣ୍ଡଅଂଶ ଅତିକ୍ରମ କରି ନଦୀ ଉପରେ ଥିବା ଶାଖାର ଶେଷ ଭାଗ ପର୍ଯ୍ୟନ୍ତ ଚାଲିଗଲେ । ତତ୍ପରେ ସେ ସେହି ଶାଖାର ଅଗ୍ରଭାଗରୁ ଲମ୍ଫ ଦେଇ ନଦୀର ଅପରତୀରରେ ପହଞ୍ଚିଲେ । ସେ ମନେ ମନେ ଶାଖାର ଅଗ୍ରଭାଗଠାରୁ ଅପରତୀରସ୍ଥ ବୃକ୍ଷ ପର୍ଯ୍ୟନ୍ତ ଦୂରତା କଳନା କରିନେଲେ । ଶାଖାର ଅଗ୍ରରେ ବାନ୍ଧିବା ପାଇଁ କେତେ ଲମ୍ବର ବେତ ଆବଶ୍ୟକ ହେବ ତାହା ଅନୁମାନ କରି ଓ ସମସ୍ତ ଦୂରତାର ହିସାବ ସ୍ଥିର କରି ଯେ ସେହି ଲମ୍ବର ଗୋଟିଏ ବେତ ଛିଣ୍ଡାଇ ନେଲେ । ବେତର ଗୋଟିଏ ମୁଣ୍ଡକୁ ବୃଦାମୂଳ ସହିତ ବାନ୍ଧିଦେଲେ ଓ ଅପରମୁଣ୍ଡଟି ନିଜ ଅଣ୍ଟାରେ ଦୃଢ଼ରୂପେ ବାନ୍ଧିଦେଲେ । ଏହି ହିସାବରେ ସେ ଗୋଟିଏ ଭୁଲ କରିଥିଲେ । ନିଜ ଅଣ୍ଟା ଚାରିପାଖେ ବାନ୍ଧିବା ପାଇଁ ଯେତେ ଲମ୍ବ ବେତ ଲାଗିବ ତାହା ସେ କଳନା କରିନଥିଲେ । ଏହି ସାମାନ୍ୟ ଭ୍ରମର ପରିଣାମ ଭୟାବହ ହୋଇଥିଲା ।

ବୋଧିସତ୍ତ୍ୱ ନଦୀର ଅପରତୀରରୁ ଆମ୍ବଗଛର ଶାଖାକୁ ଲକ୍ଷ୍ୟ କରି ଲମ୍ଫ ଦେଲେ । କିନ୍ତୁ ବେତର ଦୈର୍ଘ୍ୟ ସାମାନ୍ୟ କମ୍ ଥିବାରୁ ସେ ଶାଖାର ଅଗ୍ରଭାଗକୁ ଧରିପାରିଲେହେଁ ତାହା ଉପରକୁ ଆସି-ପାରିଲେ ନାହିଁ । ସେ ଏଥିରେ ନିରାଶ ନ ହୋଇ ବାନରମାନଙ୍କୁ ଡାକି କହିଲେ, "ତୁମେମାନେ ମୋ ପିଠି ଉପରେ ଯାଇ ବେତକୁ

Digitized by srujanika@gmail.com

ଆଶ୍ରୟ କରି ନଦୀର ଅପରତୀରକୁ ଚାଲିଯାଅ । ଶୀଘ୍ର ଏହା ନକଲେ ତୁମମାନଙ୍କ ପ୍ରାଣ ଉପରେ ବିପତ୍ତି ପଡ଼ିବ ।

ବାନରମାନେ ବୋଧିସତ୍ତ୍ୱଙ୍କୁ ପ୍ରଣାମ କରି ଜଣକ ପରେ ଜଣେ ତାଙ୍କ ପିଠି ଉପରବାଟେ ବେତକୁ ଆଶ୍ରୟ କରି ନଦୀର ଅପରତୀରକୁ ଚାଲିଗଲେ । ଶେଷରେ ଦେବଦତ୍ତ ନାମକ ଏକ ବାନର ସେହିପରି ଯିବାକୁ ବସିଲା । ଏହି ଦେବଦତ୍ତର ବୋଧିସତ୍ତ୍ୱଙ୍କ ପ୍ରତି ପୂର୍ବଜନ୍ମରୁ ବିଦ୍ୱେଷ ଥିଲା । ସେ ଭାବିଲା, 'ଏହି ସୁଯୋଗରେ ମୁଁ ବୋଧିସତ୍ତ୍ୱର ପ୍ରାଣନାଶ କରିବି ।'

ସେ ମନ୍ଦ ଉଦ୍ଦେଶ୍ୟ ମନରେ ରଖି ଅନ୍ୟମାନଙ୍କ ପରି ତାଙ୍କ ପିଠି ଉପରେ ଅତି ସାବଧାନ ଭାବରେ ଯିବା ପରିବର୍ତ୍ତେ ହଠାତ୍ ପିଠି ଉପରକୁ କୁଦିପଡ଼ିଲା । ଏହା ଫଳରେ ତାଙ୍କର ମେରୁଦଣ୍ଡଟି ଭାଙ୍ଗିଗଲା ଓ ସେ ତୀବ୍ର ଯନ୍ତ୍ରଣା ଅନୁଭବ କଲେ । ତଥାପି ସେ ଶାଖାର ଅଗ୍ରଭାଗକୁ ଧରି ରହିଲେ ଓ ଦେବଦତ୍ତ ନିରାପଦରେ ଅନ୍ୟ ତୀରରେ ପହଞ୍ଚିଲା ।

ଏଥିମଧ୍ୟରେ ରାଜାଙ୍କର ନିଦ୍ରାଭଙ୍ଗ ହୋଇଥିଲା । ସେ ବୋଧିସତ୍ତ୍ୱ ଓ ବାନରମାନଙ୍କର କାର୍ଯ୍ୟ ଲକ୍ଷ୍ୟ କରି ଚିନ୍ତା କଲେ, "ଏହି ବାନର ନିଜର ଜୀବନ ପ୍ରତି ଲବମାତ୍ର ମମତା ନ ରଖି ନିଜ ଦଳର ବାନରମାନଙ୍କ ଜୀବନ ରକ୍ଷାକଲେ । ସାମାନ୍ୟ କପିଦେହ ଧାରଣ କରିଥିଲେହେଁ ସେ ଜଣେ ମହାପୁରୁଷଙ୍କର ଆଦର୍ଶ ଦେଖାଇଅଛନ୍ତି । ନିଶ୍ଚୟ ସେ ଜଣେ ମହାତ୍ମା; କପିରୂପରେ ଜନ୍ମ-ଗ୍ରହଣ କରିଅଛନ୍ତି । ତାଙ୍କର ଜୀବନରକ୍ଷା କରିବା ମୋର କର୍ତ୍ତବ୍ୟ ।

ଏହା ବିଚାରି ସେ କେତେ ଜଣ ଅନୁଚରଙ୍କ ସହିତ ଗୋଟିଏ ନୌକାରେ ଯାଇ ତାଙ୍କୁ ଅତି ଯତ୍ନରେ ନୌକାକୁ ନେଇଆସିଲେ ।

Digitized by srujanika@gmail.com

ରାଜାଙ୍କ ଆଦେଶରେ ତାଙ୍କୁ ଶିବିରକୁ ଅଣାଗଲା । ଯଥାବଧି ଚିକିତ୍ସା ଓ ଖାଦ୍ୟପେୟର ବ୍ୟବସ୍ଥା ହେଲା । ବହୁମୂଲ୍ୟ ଶଯ୍ୟାରେ ତାଙ୍କୁ ଶୁଆଇଦେଇ ରାଜା ଭୂମି ଉପରେ ବସି କହିଲେ, "ହେ ମହାତ୍ମନ୍ ! ଯେଉଁ ବାନରମାନଙ୍କ ଜୀବନ ରକ୍ଷା କରିବା ପାଇଁ ଆପଣ ନିଜ ଜୀବନକୁ ଏପରି ବିପନ୍ନ କଲେ, ସେମାନେ ଆପଣଙ୍କର କିଏସ ହୁଅନ୍ତି ? ନିଜକୁ ଏପରି କଷ୍ଟ ଦେଲେ କାହିଁକି ?"

ବୋଧିସତ୍ତ୍ୱ ଉପଦେଶ ଛଳରେ କହିଲେ, "ହେ ମହାରାଜ ! ଏହି କପିଯୂଥର ମୁଁ ହେଉଛି ଦଳପତି । ମୁଁ ଦେଖିଲି, ସେମାନେ ଆପଣଙ୍କୁ ଭୟ କରି ବ୍ୟାକୁଳ ଓ ଦୁଃଖରେ କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଅଛନ୍ତି । ସେମାନଙ୍କୁ ରକ୍ଷା କରିବା ମୋର କର୍ତ୍ତବ୍ୟ ମନେକରି ମୁଁ ନଦୀର ଅପରପାର୍ଶ୍ୱକୁ ଗଲି ଓ ଗୋଟିଏ ବେତ ଆଣି ତାହାର ଗୋଟିଏ ପ୍ରାନ୍ତ ତଟସ୍ଥିତ ବୃକ୍ଷମୂଳରେ ଓ ଅନ୍ୟ ପ୍ରାନ୍ତଟି ମୋ ନିଜ ଅଣ୍ଟାରେ ବାନ୍ଧିଲି । ମୁଁ ଗଛକୁ ଲକ୍ଷ୍ୟ କରି ଦୀର୍ଘ ଲମ୍ଫ ଦେଲି; କିନ୍ତୁ ବେତର ଦୈର୍ଘ୍ୟ କମ୍ ଥିବାରୁ ମୁଁ ଗଛକୁ ଆସି ନ ପାରି ଶାଖାର ଅଗ୍ରଭାଗକୁ ଧରି ରହିଲି । ମୋର ଆଦେଶରେ ଦଳର କପିମାନେ ମୋ ପିଠି ଉପରେ ଚାଲିଯାଇ ବର୍ତ୍ତମାନ ନିରାପଦ ସ୍ଥାନରେ ରହିଥିବାରୁ ମୋର ଆନନ୍ଦ । ମୋର ମେରୁଦଣ୍ଡ ଭାଙ୍ଗି-ଯାଇଛି ଓ ମୋର ମୃତ୍ୟୁକାଳ ନିକଟ ବୋଲି ମୁଁ ଜାଣିପାରୁଛି; କିନ୍ତୁ ମୋର ଅସୀମ ଆନନ୍ଦ ହେଉଛି ଯେ ମୋର ଆଶ୍ରିତମାନଙ୍କୁ ଉଦ୍ଧାର କରି ପାରିଛି । ଏହି ଆନନ୍ଦରେ ମୁଁ ଶାରୀରିକ ଯନ୍ତ୍ରଣାକୁ ଭୁଲିଯାଉଛି । ହେ ରାଜନ୍ ! ଆପଣ ଏଡ଼େ ବଡ଼ ରାଜ୍ୟର ଅଧୀଶ୍ୱର; କେତେ ପ୍ରଜା, ଦାସଦାସୀ, ସୈନ୍ୟସାମନ୍ତ ଆପଣଙ୍କ ଉପରେ ନିର୍ଭର କରିଅଛନ୍ତି । ଆପଣ ଏହି ଆଶ୍ରିତମାନଙ୍କ ପ୍ରତି ନିଜର କର୍ତ୍ତବ୍ୟ କରିବେ ବୋଲି ମୋର ଆଶା ।"

Digitized by srujanika@gmail.com

ବୋଧିସତ୍ତ୍ୱ ଅଳ୍ପକାଳ ପରେ ଇହଧାମ ପରିତ୍ୟାଗ କରିଗଲେ । ରାଜା ମନ୍ତ୍ରୀ ପ୍ରଭୃତି ମହାଆଡ଼ମ୍ବରରେ ତାଙ୍କର ମୃତଦେହକୁ ଶ୍ମଶାନରେ ରାଜୋଚିତ ବିଧିରେ ସତ୍କାର କଲେ । ରାଜାଙ୍କ ଆଦେଶରେ ସମସ୍ତ ନଗରବାସୀ ମୃତ ମହାକପିଙ୍କ ଉଦ୍ଦେଶ୍ୟରେ ସମ୍ମାନ ପ୍ରଦର୍ଶନ କଲେ । ତାଙ୍କ ସ୍ମୃତିରକ୍ଷା ପାଇଁ ମଧ୍ୟ ଉଚିତ ବ୍ୟବସ୍ଥା କରାଗଲା । ରାଜା ଆଜୀବନ ଏହି ମହାତ୍ମାଙ୍କ ଉପଦେଶ ସ୍ମରଣରେ ରଖି ଦାନ, ଧର୍ମ ଓ ପ୍ରଜାମାନଙ୍କ ସେବାରେ ଜୀବନଯାପନ କଲେ । ଦୀର୍ଘକାଳ ରାଜ୍ୟ ଶାସନ କରି ସେ ଏହିସବୁ ସତ୍କାର୍ଯ୍ୟ ନିମନ୍ତେ ସ୍ୱର୍ଗରାଜ୍ୟର ଅଧିକାରୀ ହେଲେ । ***

# ଶିବି ଜାତକ

ପୂର୍ବକାଳରେ ଶିବି ରାଜ୍ୟରେ ଜଣେ ରାଜା ଥିଲେ । ରାଜାଙ୍କର ନାମ ମଧ୍ୟ ଥିଲା ଶିବି । ତେଣୁ ତାଙ୍କୁ ସମସ୍ତେ ଶିବିରାଜା ବୋଲି କହୁଥିଲେ । ସେ ରାଜ୍ୟର ରାଜଧାନୀ ଅରିଷ୍ଟପୁରରେ ରହି ରାଜ୍ୟ ଶାସନ କରୁଥିଲେ । ଏକସମୟରେ ବୋଧିସତ୍ତ୍ୱ ଏହି ଶିବିରାଜାଙ୍କର ପୁତ୍ରରୂପେ ଜନ୍ମିଥିଲେ । ସେତେବେଳେ ତାଙ୍କର ନାମ ଥିଲା ଶିବିକୁମାର । ବୟଃପ୍ରାପ୍ତ ହୁଅନ୍ତେ ତାଙ୍କୁ ଶିବିରାଜା ବିଦ୍ୟାଧ୍ୟୟନ ନିମନ୍ତେ ତକ୍ଷଶିଳାକୁ ପ୍ରେରଣ କଲେ । ସେଠାରେ ଉପଯୁକ୍ତ ଗୁରୁଙ୍କ ନିକଟରେ ରହି ସେ ପାଣ୍ଡିତ୍ୟ ଅର୍ଜନ କରିବା ପରେ ଅରିଷ୍ଟପୁରକୁ

Digitized by srujanika@gmail.com

ଫେରିଆସିଲେ । ଶିବରାଜା ଦେଖିଲେ ଯେ ପୁତ୍ର ବିବିଧ ବିଦ୍ୟାରେ କୃତିତ୍ୱ ଲାଭ କରିଅଛି । ତେଣୁ ସେ ତାଙ୍କୁ ରାଜପ୍ରତିନିଧିରୂପେ ନିଯୁକ୍ତ କରିଦେଲେ ।

କିଛିକାଳ ପରେ ଶିବିରାଜାଙ୍କର ମୃତ୍ୟୁ ହେବାରୁ ଶିବକୁମାର ରାଜସିଂହାସନ ଆରୋହଣ କଲେ । ରାଜପଦରେ ପ୍ରତିଷ୍ଠିତ ହୋଇ ସେ ସୁଶାସନର ବ୍ୟବସ୍ଥା କଲେ । ରାଜ୍ୟଶାସନର ଦଶ ନୀତି ସେ ସେ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । ଏହି ନୀତିଗୁଡ଼ିକ ହେଲା —ଦାନ, ଶୀଳ, ପରିତ୍ୟାଗ, ଆର୍ଜବ, ମାର୍ଦ୍ଦବ, ତପ, ଅକ୍ରୋଧ, ଅହିଂସା, କ୍ଷାନ୍ତି ଓ ଅବିରୋଧନ । ପ୍ରଜାମାନେ ମଧ୍ୟ ରାଜାଙ୍କର ଆଦର୍ଶ ଅନୁସରଣ କରି ଚଳୁଥିଲେ । ରାଜା ନଗରର ଚତୁଷ୍ପାର୍ଶ୍ୱରେ ଗୋଟିଏ ଲେଖାଏଁ, ପ୍ରାସାଦର ତୋରଣରେ ଗୋଟିଏ ଓ ନିଜ ଗୃହର ଦ୍ୱାରଦେଶରେ ଗୋଟିଏ, ଏପରି ଛଅଟି ଦାନଶାଳା ବସାଇ-ଥିଲେ । ପ୍ରତିଦିନ ସେ ଛଅଶହ ମୁଦ୍ରା ଦାନ କରୁଥିଲେ । କୃଷ୍ଣ-ପକ୍ଷର ଅଷ୍ଟମୀ ଓ ଚତୁର୍ଦ୍ଦଶୀ ଏବଂ ଶୁକ୍ଳପକ୍ଷର ପୂର୍ଣ୍ଣିମାଦିନ ସେ ନିଜେ ଦାନଶାଳାରେ ରହି ଦାନ ଦେଉଥିଲେ । ଏଥିରେ କେବେ-ହେଲେ ବ୍ୟତିକ୍ରମ ହେଉ ନ ଥିଲା ।

ଥରେ ପୂର୍ଣ୍ଣିମାତିଥିରେ ସେ ପ୍ରତ୍ୟୁଷରୁ ଉଠି ନିତ୍ୟକର୍ମ ଶେଷ କରି ସିଂହାସନରେ ବସି ନିଜର ଦାନ ବିଷୟ ଭାବିବାକୁ ଲାଗିଲେ । ସେ ଚିନ୍ତା କଲେ, "ଧନ, ରତ୍ନ, ଶସ୍ୟ ପ୍ରଭୃତି ଅନେକ ବସ୍ତୁ ମୁଁ ଦାନ କରିଅଛି; ମାତ୍ର ମୁଁ ଯାହା କିଛି ଦେଇଅଛି, ସେସବୁ ବାହାରର ଜିନିଷ । ଏଭଳି ଦାନ ଦେବାରେ ମୋର ତୃପ୍ତି ଆସୁ-ନାହିଁ । ମୋ ନିଜ ଅଙ୍ଗରୁ କିଛି ଦାନ ଦେବି । ଆଜି ଦାନଶାଳାରେ ମୁଁ ନିଜେ ଦାନ କରିବାକୁ ଯିବି । ମୁଁ ପ୍ରତିଜ୍ଞା କରୁଛି, ଯଦି କେହି

Digitized by srujanika@gmail.com

ମୋ ଶରୀରର କୌଣସି ଅଂଶ ମାଗେ, ତାହା ଆନନ୍ଦରେ ଦେବ । କେହି ମୋର ହୃଦୟର ମାଂସ ଗୃହିଁଲେ ମୁଁ ଅସ୍ତ୍ରରେ ବକ୍ଷ ବଦୀର୍ଣ୍ଣ କରି ପୁଷ୍କରଣୀରୁ ନାଳଦଣ୍ଡ ସହିତ ପଦ୍ମପୁଷ୍ପ ଛିଣ୍ଡାଇ ଆଣିଲା ପରି ହୃଦୟଟିକୁ କାଟିଆଣି ତାହାକୁ ଦାନ କରିବ । ଯଦି କେହି ମୋର ମାଂସ ମାଗିବ, ତାହାହେଲେ ମୁଁ କୋଦାଳରେ ମାଟି ଖୋଳିଲା ପରି ତୀକ୍ଷ୍ଣ ଅସ୍ତ୍ରରେ ଶରୀରରୁ ମାଂସ କାଟି ତାକୁ ଦେବ । କେହି ମୋର ରକ୍ତ ମାଗିଲେ ମୋ ଶରୀରରୁ ରକ୍ତ ବାହାର କରି ତାକୁ ଦେବ । କେହି ଯଦି କହେ, 'ମୋର ଘରର କାର୍ଯ୍ୟ ପାଇଁ ଜଣେ ଲୋକ ଦିଅ' ତାହାହେଲେ ମୁଁ ଏ ରାଜପରିଚ୍ଛଦ ତ୍ୟାଗକରି ତାର ଗୃହ-କାର୍ଯ୍ୟ କରିବେ । ଏପରିକି ଯଦି କେହି ମୋର ଆଖିଦୁଇଟି ମାଗେ, ତେବେ ମୁଁ ନିଜର ଆଖିଦୁଇଟି ତାଡ଼ି ତାକୁ ଦାନ କରିବ ।"

ଏହିପରି ପ୍ରତିଜ୍ଞା କରି ସେ ରାଜକୀୟ ଆଡ଼ମ୍ବରସହକାରେ ହସ୍ତୀପୃଷ୍ଠରେ ଆରୋହଣ କରି ଦାନଶାଳାକୁ ଗମନ କଲେ । ଦେବରାଜ ଶକ୍ର ଶିବିରାଜାଙ୍କର ଏହି ପ୍ରତିଜ୍ଞା ଜାଣିପାରି ଭାବିଲେ, 'ଶିବିରାଜା ବହୁତ ଦାନ କରିଅଛନ୍ତି ସତ; କିନ୍ତୁ ସେ ଆଜ ଯେଉଁ ପ୍ରତିଜ୍ଞା କଲେ ତାହା ପାଳନ କରିପାରିବେ କି ? କେହି ମାଗିଲେ ସେ ନିଜର ଚକ୍ଷୁ ଦୁଇଟି ମଧ୍ୟ ଦେବେ ବୋଲି ପ୍ରତିଜ୍ଞା କରିଅଛନ୍ତି । ଏହା କିଅଣ ସମ୍ଭବ ହୋଇପାରେ ?'

ଏହିପରି ଚିନ୍ତାକରି ସେ ଶିବିରାଜାଙ୍କୁ ପରୀକ୍ଷା କରିବା ଉଦ୍ଦେଶ୍ୟରେ ଜଣେ ବୃଦ୍ଧ ଅନ୍ଧ ବ୍ରାହ୍ମଣରୂପରେ ଦାନଶାଳାରେ ଉପସ୍ଥିତ ହେଲେ । ରାଜା ଦାନଶାଳାକୁ ଆସିଲାକ୍ଷଣି ବ୍ରାହ୍ମଣ ଦକ୍ଷିଣ ହସ୍ତ ପ୍ରସାରିତ କରି କହିଲେ, "ଦାନବୀର ଶିବିରାଜାଙ୍କର ଜୟ ହେଉ ।"

Digitized by srujanika@gmail.com

ରାଜା ତାଙ୍କ ଆଉକୁ ଅଗ୍ରସର ହୋଇ ପଗ୍ଭରିଲେ, "ହେ ବ୍ରାହ୍ମଣ ! ତୁମର କ ପ୍ରାର୍ଥନା ?"

ବ୍ରାହ୍ମଣ ଉତ୍ତର କଲେ, "ମହାରାଜ! ଆପଣଙ୍କ ଦାନଶୀଳତା ସମଗ୍ର ପୃଥିବୀରେ କୀର୍ତ୍ତିତ ହେଉଅଛି । ତେଣୁ ମୋର ଅଭିଳାଷ ପୂରଣ ଆଶାରେ ଆପଣଙ୍କର ଦ୍ୱାରସ୍ଥ ହୋଇଅଛି । ମୁଁ ଅନ୍ଧ; କିନ୍ତୁ ଆପଣଙ୍କର ଦୁଇଟି ଚକ୍ଷୁ ଅଛି । ସେଥିରୁ ଗୋଟିଏ ମାଗିବା ପାଇଁ ବହୁଦୂରରୁ ଚାଲି ଚାଲି ଆସିଛି । ମୋତେ ଗୋଟିଏ ଚକ୍ଷୁ ଦାନ କଲେ ଆମେ ଉଭୟେ ଗୋଟିଏ ଲେଖାଏଁ ଚକ୍ଷୁରେ ଦେଖିପାରିବା ।"

ରାଜା ଶିବ ଚିନ୍ତା କରିବାକୁ ଲାଗିଲେ, 'ଆଜ ନିଶ୍ଚୟ ମୋର ସୌଭାଗ୍ୟ ଉପସ୍ଥିତ । ମୁଁ ଆସିବା ଆଗରୁ ଯାହା କଳ୍ପନା କରିଥିଲି, ଠିକ୍ ତାହାହିଁ ଘଟିଅଛି । ମୁଁ ଏ ସୁଯୋଗ ହରାଇବି ନାହିଁ । ଏପରି ଦାନ ଏଥିପୂର୍ବରୁ କେହି ଦେଇ ନ ଥିଲି ।' ସେ କହିଲେ, "ବ୍ରାହ୍ମଣ ! ତୁମକୁ ଏଠାକୁ ଆସିବାକୁ କିଏ ଉପଦେଶ ଦେଲା ? କାହାର ପରାମର୍ଶରେ ତୁମେ ଏପରି ଅଭୂତପୂର୍ବ ଦାନ ମାଗିଲ ?"

ବ୍ରାହ୍ମଣ ଉତ୍ତର କଲେ, "ଦେବରାଜ ଶକ୍ରଙ୍କ ପରାମର୍ଶକ୍ରମେ ମୁଁ ଏ ପ୍ରାର୍ଥନା କରିବାକୁ ଆସିଅଛି । ମୁଁ ଯେଉଁ ଦାନ ମାଗୁଛି, ଜଗତରେ ତାହାଠାରୁ ବଳି ଶ୍ରେଷ୍ଠ ଦାନ ଆଉ ନାହିଁ । କେହି ଆଜି ପର୍ଯ୍ୟନ୍ତ ନିଜର ଚକ୍ଷୁଦାନ କରିଥିବା କଥା ଶୁଣାନାହିଁ । ଆପଣ ମୋତେ ସେହି ଅମୂଲ୍ୟ ଦାନ ଦିଅନ୍ତୁ ।"

ରାଜା କହିଲେ, "ବ୍ରାହ୍ମଣ ! ତୁମର ଅଭିଳାଷ ପୂରଣ କରିବି । ତୁମେ ଗୋଟିଏ ଚକ୍ଷୁ ମାଗିଅଛ; କିନ୍ତୁ ମୁଁ ମୋର ଦୁଇଟି-

Digitized by srujanika@gmail.com

ଯାକ ଚକ୍ଷୁ ଦେବ । ତୁମେ ମୋର ଚକ୍ଷୁ ଦୁଇଟି ନେଇ ପୂର୍ଣ୍ଣ ଦୃଷ୍ଟିଶକ୍ତି ଫେରପାଇଲେ ମୁଁ ଆନନ୍ଦିତ ହେବ ।”

କିନ୍ତୁ ଦାନଶାଳାରେ ସଙ୍ଗେ ସଙ୍ଗେ ଚକ୍ଷୁ ଦୁଇଟି ଛାଡ଼ି ବ୍ରାହ୍ମଣଙ୍କୁ ଦେବା ଅନୁଚିତ ମନେକରି ସେ ବ୍ରାହ୍ମଣଙ୍କୁ ନିଜ ଘର ଭିତରକୁ ଡାକିନେଲେ ଓ ରାଜବୈଦ୍ୟ ସୀବକଙ୍କୁ ଡକାଇଲେ । ସୀବକ ଉପସ୍ଥିତ ହେବାରୁ ରାଜା ଆଦେଶ ଦେଲେ, “ସୀବକ, ମୋର ଚକ୍ଷୁ ଦୁଇଟି ବାହାର କରି ଏହି ବ୍ରାହ୍ମଣଙ୍କୁ ଦିଅ ।”

“ରାଜା ଜଣେ ଅନ୍ଧ ବ୍ରାହ୍ମଣକୁ ନିଜର ଚକ୍ଷୁ ଦାନ କରୁଅଛନ୍ତି”—ଏହି ସମ୍ବାଦ ନଗରର ଚତୁର୍ଦ୍ଦିଗରେ ବ୍ୟାପିଗଲା । ଅନ୍ତଃପୁରର ରମଣୀମାନେ, ରାଜକର୍ମଚାରୀଗଣ ତଥା ଜନସାଧାରଣ ପ୍ରାସାଦକୁ ଦଉଡ଼ି ଆସି ପ୍ରାର୍ଥନା କଲେ, “ମହାରାଜ ! ଆପଣ ଏ କଅଣ କରିବାକୁ ଯାଉଛନ୍ତି ? ଆପଣ ଚକ୍ଷୁ ଦାନ କରି ଅନ୍ଧ ହୋଇଗଲେ ଆମେ ନିରାଶ୍ରୟ ହୋଇପଡ଼ିବୁ । ଆମମାନଙ୍କୁ ତ୍ୟାଗ କରନ୍ତୁ ନାହିଁ । ବ୍ରାହ୍ମଣଙ୍କୁ ହୀରା, ନୀଳା, ମଣି, ମୁକ୍ତା ଯାହାକିଛି ଦାନ କରନ୍ତୁ; କିନ୍ତୁ ନିଜର ଚକ୍ଷୁ ଦିଅନ୍ତୁ ନାହିଁ ।”

ରାଜା କହିଲେ, “ଯେ ଥରେ କିଛି ପ୍ରତିଜ୍ଞା କରି ପରେ ତାହା ଭଙ୍ଗ କରେ, ସେ ନରକଗାମୀ ହୁଏ । ଯିଏ ଯାହା ଚାହେଁ ନାହିଁ, ତାକୁ ତାହା ଦେବାରେ କିଛି ଫଳ ନାହିଁ; ତେଣୁ ବ୍ରାହ୍ମଣ ଯାହା ମାଗିଛନ୍ତି, ତାହାହିଁ ଦେବି ।”

ରାଜାଙ୍କର ପାରିଷଦମାନେ କହିଲେ, “ଦୀର୍ଘ ଜୀବନ, ସୁନ୍ଦର ରୂପ, ସୁଖ-ସମ୍ଭୋଗ ପ୍ରଭୃତି ଲାଭ କରିବା ଆଶାରେ ଲୋକେ ଦାନ ଦେଇଥାନ୍ତି । କିନ୍ତୁ ଆପଣଙ୍କର ଏସବୁର ଅଭାବ ନାହିଁ । ପରଜନ୍ମ ପାଇଁ ନିଜର ଚକ୍ଷୁ ଦାନ କରିବା ଉଚିତ ହେବ ନାହିଁ ।”

Digitized by srujanika@gmail.com

ରାଜା ଉତ୍ତର କଲେ, "ମୁଁ ଯଶ ପାଇଁ ବା ପୁଣ୍ୟ ପାଇଁ ଅବା ରାଜ୍ୟ ପାଇଁ ଦାନ ଦେଉନାହିଁ । ଦାନ ଦେବାକୁ ଧାର୍ମିକ ଲୋକେ ଉପଦେଶ ଦେଇଯାଇଅଛନ୍ତି । ସେଥିପାଇଁ ମୁଁ ଦାନ ଦେଉଛି । ଏହାଛଡ଼ା ଦାନ ଦେବାରେ ମୋର ଅନ୍ୟ କୌଣସି ଉଦ୍ଦେଶ୍ୟ ନାହିଁ ।"

ପାରିଷଦବର୍ଗ ନୀରବ ହେଲେ । ରାଜା ସୀବକଙ୍କୁ କହିଲେ, "ସୀବକ, ତୁମେ ମୋର ଉପକାରୀ ବନ୍ଧୁ । ମୋର ଅଭିଳାଷ ପୂରଣରେ ତୁମେ ସହାୟ ହୁଅ । ମୋର ଚକ୍ଷୁଦୁଇଟି ବାହାର କରି ବ୍ରାହ୍ମଣଙ୍କୁ ଦିଅ ।"

ସୀବକ କହିଲେ, "ମହାରାଜ ! ଠିକ୍‌ଏ ଚିନ୍ତା କରନ୍ତୁ । ଆଖି ଦୁଇଟି ହରାଇବା ସହଜ କଥା ନୁହେଁ ।"

ରାଜା ତାଙ୍କୁ ଆଉ କିଛି କହିବାକୁ ନ ଦେଇ ଗମ୍ଭୀର ସ୍ୱରରେ କହିଲେ, "ମୁଁ ଚିନ୍ତା କରି ଦେଖିଛି । ଆଉ ଚିନ୍ତା କରିବାର କାରଣ ନାହିଁ । ବିଳମ୍ବ ନକରି ଶୀଘ୍ର ମୋର ଚକ୍ଷୁ ଦୁଇଟି ବାହାର କରିନିଅ ।"

ଅଗତ୍ୟା ସୀବକ ଗୋଟିଏ ଔଷଧ ପ୍ରସ୍ତୁତ କରି ତାହାକୁ ରାଜାଙ୍କ ଦକ୍ଷିଣ ଚକ୍ଷୁ ଉପରେ ବୋଳିଦେଲେ । ରାଜା ତୀବ୍ର ଯନ୍ତ୍ରଣା ଅନୁଭବ କରିବା ସଙ୍ଗେ ଚକ୍ଷୁଟି କୋଟରର ମଧ୍ୟରେ ଘୂରିବାକୁ ଲାଗିଲା । ସୀବକ କହିଲେ, "ମହାରାଜ ! ଥରେ ଭାବି ଦେଖନ୍ତୁ । ମୁଁ ପୁଣି ଚକ୍ଷୁଟିକୁ ଯଥାସ୍ଥାନରେ ରଖାଇ ପାରିବି ।"

ରାଜା କହିଲେ, "ମୋ ମନ ପରିବର୍ତ୍ତନ ଚେଷ୍ଟା ନ କରି ନିଜର କାର୍ଯ୍ୟ କର । ବିଳମ୍ବରେ ପ୍ରୟୋଜନ ନାହିଁ ।"

Digitized by srujanika@gmail.com

ଯୀବକ ଆଉ ଥରେ ଔଷଧ ଲଗାଇଦେଲେ । ଯନ୍ତ୍ରଣା ତୀବ୍ରତର ହେଲା ଓ ଚକ୍ଷୁଟି କୋଟରର ବାହାରକୁ ଚାଲିଆସିଲା । ଯୀବକ ପୁଣି କହିଲେ, "ମହାରାଜ ! ଏବେ ମଧ୍ୟ ସମୟ ଅଛି; ଆପଣ ଭାବ ଚିନ୍ତା କରନ୍ତୁ । ଅନ୍ୟ ଔଷଧଦ୍ୱାରା ମୁଁ ଚକ୍ଷୁଟିକୁ ଯଥାସ୍ଥାନକୁ ନେଇପାରିବ ।"

ରାଜା ପୁଣି କହିଲେ, "ଶୀଘ୍ର ତୁମର କାର୍ଯ୍ୟ ଶେଷ କର । ବୃଥା ପ୍ରଳାପ କର ନାହିଁ ।"

ଯୀବକ ତୃତୀୟ ଥର ଔଷଧ ପ୍ରୟୋଗ କରନ୍ତେ ଚକ୍ଷୁଟି ତଳକୁ ଖସିଆସିଲା । ଯୀବକ ତାହାକୁ ବାମ ହସ୍ତରେ ଧରିନେଲେ । ରାଜାଙ୍କର ପରିଚ୍ଛଦ ରକ୍ତାକ୍ତ ହୋଇଗଲା । ରାଜମହିଷୀ ଓ ଅନ୍ତଃପୁରର ରମଣୀମାନେ ବିଳାପଧ୍ୱନିରେ ଆକାଶ ବିଦୀର୍ଣ୍ଣ କରିଦେଲେ; କିନ୍ତୁ ସେମାନଙ୍କ ପ୍ରାର୍ଥନା ପ୍ରତି କର୍ଣ୍ଣପାତ ନ କରି ରାଜା କହିଲେ, "ଯୀବକ, ଶୀଘ୍ର ଚକ୍ଷୁଟିକୁ ଛିନ୍ନ କରି ପ୍ରକୃତ ବନ୍ଧୁର କାର୍ଯ୍ୟ କର । ବିଳମ୍ବ କର ନାହିଁ ।"

ଯୀବକ ବାଧ୍ୟ ହୋଇ ଅନିଚ୍ଛାସତ୍ତ୍ୱେ ଚକ୍ଷୁର ସ୍ନାୟୁଟି ଅସ୍ତ୍ରଦ୍ୱାରା କାଟିଦେଲେ ଓ ତାହାକୁ ରାଜାଙ୍କ ହସ୍ତରେ ଦେଲେ । ରାଜା ବିକଚ କମଳ ସଦୃଶ ସେହି ଦକ୍ଷିଣ ଚକ୍ଷୁଟିକୁ ବାମ ଚକ୍ଷୁରେ ଚାହିଁ ଆନନ୍ଦିତ ଚିତ୍ତରେ ବ୍ରାହ୍ମଣଙ୍କୁ କହିଲେ, "ଆସ ବ୍ରାହ୍ମଣ ! ଏହାକୁ ନିଅ । ଏହାକୁ ଦେବାଦ୍ୱାରା ମୁଁ ଚର୍ମଚକ୍ଷୁ ହରାଇଲି ସତ; କିନ୍ତୁ ତାହା ବଦଳରେ ଦିବ୍ୟଚକ୍ଷୁ ପାଇଛି; ଯାହା ଚର୍ମ ଚକ୍ଷୁଠାରୁ ସହସ୍ରଗୁଣେ ମୂଲ୍ୟବାନ୍; ଯାହାର ଦର୍ଶନଶକ୍ତି କ୍ଷୁଦ୍ରସୀମାରେ ଆବଦ୍ଧ ନୁହେ ଏବଂ ଯାହା ସୁଦୂରପ୍ରସାରୀ ।"

Digitized by srujanika@gmail.com

ଏହା କହି ସେ ବ୍ରାହ୍ମଣଙ୍କୁ ଚକ୍ଷୁଟି ଦେଲେ । ବ୍ରାହ୍ମଣ ତାହାକୁ ନିଜ ଶୂନ୍ୟ ଚକ୍ଷୁକୋଟରରେ ପୂରାଇଦେଲେ । ରାଜା ବାମ ଚକ୍ଷୁ ସାହାଯ୍ୟରେ ବ୍ରାହ୍ମଣଙ୍କର ଏହି ନୂତନ ଦକ୍ଷିଣ ଚକ୍ଷୁଟିକୁ ଗୃହି କହିଲେ, "ମୋର ଦାନ ସାର୍ଥକ ହୋଇଛି ।" ସେ ଆନନ୍ଦରେ ଉତ୍ଫୁଲ୍ଲ ହୋଇ ବାମ ଚକ୍ଷୁଟିକୁ ମଧ୍ୟ ସେହିପରି ବ୍ରାହ୍ମଣଙ୍କୁ ଦାନ କଲେ । ବ୍ରାହ୍ମଣ ମଧ୍ୟ ତାହା ବାମ ଚକ୍ଷୁକୋଟରରେ ସ୍ଥାପନ କଲେ । ଦର୍ଶକମଣ୍ଡଳୀ ଏହି ଦୃଶ୍ୟ ଦେଖି ସ୍ତବ୍ଧ ହୋଇଗଲେ । ବ୍ରାହ୍ମଣ ଉଭୟ ଚକ୍ଷୁ ଲଭିକରି ପ୍ରସ୍ଥାନ କଲେ ।

ଅଳ୍ପ ସମୟ ପରେ ଗୋଟିଏ ବିଚିତ୍ର ଘଟଣା ଘଟିଲା । ସଙ୍ଗେ ସଙ୍ଗେ ରାଜାଙ୍କର ଯନ୍ତ୍ରଣା ଉଭେଇଗଲା ଓ ତାଙ୍କ ଚକ୍ଷୁ ଯେଉଁଠାରେ ଥିଲା, ସେଠାରେ ଦୁଇଟି ନୂତନ ଚକ୍ଷୁ ବାହାରିଲା; କିନ୍ତୁ ତାର ଦର୍ଶନଶକ୍ତି ନଥିଲା ।

ରାଜା ଅନ୍ଧ ଭାବରେ କେତୋଟି ଦିନ ପ୍ରାସାଦ ଭିତରେ କଟାଇବା ପରେ ଭାବିବାକୁ ଲାଗିଲେ, 'ଜଣେ ଅନ୍ଧପକ୍ଷରେ ରାଜପଦ ମଣ୍ଡନ କରିବା ଅନୁଚିତ । ମନ୍ତ୍ରୀମାନଙ୍କ ଉପରେ ରାଜ୍ୟଭାର ନ୍ୟସ୍ତ କରି ମୁଁ ସନ୍ନ୍ୟାସ ଅବଲମ୍ବନ କରିବି ।' ସେ ମନ୍ତ୍ରୀ ଓ ପାରିଷଦମାନଙ୍କୁ ଡକାଇ ତାଙ୍କର ଏହି ଇଚ୍ଛା ପ୍ରକାଶ କଲେ । ନିଜର ଚଳିବା ନିମନ୍ତେ ଜଣେମାତ୍ର ଭୃତ୍ୟ ନେଇ ସେ ରାଜପ୍ରାସାଦ ଛାଡ଼ି ଯିବାକୁ ବାହାରିଲେ । ସନ୍ନ୍ୟାସୀ ନ ହେବା ପାଇଁ ମନ୍ତ୍ରୀ ପ୍ରମୁଖ ଅନୁରୋଧ କଲେ; ମାତ୍ର ରାଜା ନିଜ ଇଚ୍ଛାରେ ଦୃଢ଼ ହୋଇ ରହିଲେ । ସେମାନେ ରାଜାଙ୍କୁ ଗୋଟିଏ ସୁବର୍ଣ୍ଣନିର୍ମିତ ସବାରିରେ ବସାଇ ନିଜେ ବୋହିନେଲେ । ନଗର ବାହାରେ ଗୋଟିଏ ପୁଷ୍କରିଣୀ କୂଳରେ ସେ ଅବସ୍ଥାନ କଲେ ।

Digitized by srujanika@gmail.com

ଏହି ସମୟରେ ଶକ୍ରଙ୍କର ଆସନ ଟଳମଳ ହେଲା । ସେ ଏଥିର କାରଣ ବୁଝିପାରି ସେ ଚିନ୍ତା କଲେ, "ମୁଁ ଶିବରାଜାଙ୍କୁ ବର ଦେଇ ତାଙ୍କର ଚକ୍ଷୁ ଫେରାଇଦେବି ।" ସେ ଉକ୍ତ ପୁଷ୍କରଣୀ ତଟରେ ଉପସ୍ଥିତ ହୋଇ ରାଜାଙ୍କ ନିକଟରେ ଏଣେତେଣେ ବୁଲିବାକୁ ଲାଗିଲେ । ପାଦଧ୍ୱନି ଶୁଣି ଶିବରାଜା ପଚାରିଲେ, "ଆପଣ କିଏ ?"

ଶକ୍ର ଉତ୍ତର କଲେ, "ମୁଁ ଦେବରାଜ ଶକ୍ର । ଆପଣଙ୍କ ଦର୍ଶନ ପାଇଁ ଆସିଛି । କୌଣସି ଗୋଟିଏ ବର ପ୍ରାର୍ଥନା କରନ୍ତୁ ।"

ରାଜା ଉତ୍ତର କଲେ, "ଧନ, ଜନ, ଅଧିକାର ଏସବୁ ମୁଁ ତ୍ୟାଗକରି ଆସିଛି । ମୁଁ ଅନ୍ଧ; ମୋର ଜୀବନରେ କାହାରି ଉପକାର ହେବ ନାହିଁ । ତେଣୁ ମୁଁ ମୃତ୍ୟୁ ଛଡ଼ା ଆଉ କିଛି ଚାହେଁ ନାହିଁ ।"

ଶକ୍ର ପ୍ରଶ୍ନ କଲେ, "ତୁମେ ମରିବାକୁ ଇଚ୍ଛା କରି ମୃତ୍ୟୁ କାମନା କରୁଛ ? କି ଅନ୍ଧ ହୋଇଥିବାରୁ ମୃତ୍ୟୁ କାମନା କରୁଅଛ ? ଜଗତରେ ପ୍ରତ୍ୟେକ କାର୍ଯ୍ୟରେ ଗୋଟାଏ ଉଦ୍ଦେଶ୍ୟ ଥାଏ । କେଉଁ ଉଦ୍ଦେଶ୍ୟରେ ତୁମକୁ ଗୋଟିଏ ଚକ୍ଷୁ ମାଗିବାସ୍ଥଳେ ତୁମେ ଦୁଇଟି ଚକ୍ଷୁ ଦାନ କଲ ? ତୁମେ ପ୍ରକୃତ ଉଦ୍ଦେଶ୍ୟ ପ୍ରକାଶ କଲେ ତୁମର ଦୃଷ୍ଟିଶକ୍ତି ଫେରିପାଇବ ।"

ଶିବ ଉତ୍ତର କଲେ, "ମୋତେ ଗୋଟିଏ ଚକ୍ଷୁ ଦେବାକୁ ଆପଣଙ୍କର ଇଚ୍ଛା ଥିଲେ ମୋର ଦାନର ଫଳସ୍ୱରୂପ ତାହା ଦିଅନ୍ତୁ । ଯଦି ମୁଁ ଯାଚକଙ୍କୁ ନିଜର ପ୍ରିୟଜନ ମନେକରି ଦାନ ଦେଇଥାଏଁ ଓ ଅନ୍ୟ କିଛି ବିଚାର କରି ନ ଥାଏଁ, ତେବେ ମୋର ଦୃଷ୍ଟିଶକ୍ତି ଫେରାଇଦିଅନ୍ତୁ ।"

Digitized by srujanika@gmail.com

ଏହା କହିବାମାତ୍ରେ ଶିବ ଗୋଟିଏ ଚକ୍ଷୁରେ ଦେଖିପାରିଲେ । ତତ୍ପରେ ସେ କହିଲେ, "ବ୍ରାହ୍ମଣ ମୋତେ ଗୋଟିଏ ଚକ୍ଷୁ ଭିକ୍ଷା କରିଥିଲେ; କିନ୍ତୁ ମୁଁ ଦୁଇଟିଯାକ ଚକ୍ଷୁ ଦାନ କରିବାଦ୍ୱାରା ଅଧିକ ଆନନ୍ଦ ଉପଭୋଗ କରିଥିଲି । ଏହା ଯଦି ସତ୍ୟ ହୋଇଥାଏ, ତେବେ ମୋର ଅନ୍ୟ ଚକ୍ଷୁଟିରେ ମଧ୍ୟ ଦୃଷ୍ଟିଶକ୍ତି ଫେରିଆସୁ ।"

ତତ୍କ୍ଷଣାତ୍ ରାଜା ଦୁଇଚକ୍ଷୁ ଚକ୍ଷୁଟିରେ ଦେଖିପାରିଲେ । ମନ୍ତ୍ରୀ ଓ ରାଜକର୍ମଚାରୀ ପ୍ରଭୃତି ଏହା ଦେଖି ଆନନ୍ଦ ଓ ବିସ୍ମୟରେ ଅଭିଭୂତ ହୋଇଗଲେ । ସେମାନଙ୍କ ସମକ୍ଷରେ ଶକ୍ର ରାଜା ଶିବଙ୍କୁ କହିଲେ, "ହେ ମହାରାଜ ! ଆପଣ ନିଜର କାର୍ଯ୍ୟଦ୍ୱାରା ଏହି ସ୍ୱର୍ଗୀୟ ଚକ୍ଷୁ ଦୁଇଟି ଲାଭ କରିଅଛନ୍ତି । ଏହାଦ୍ୱାରା ଆପଣ ସହସ୍ର ସହସ୍ର କୋଶ ଦୂରକୁ ଦେଖିପାରିବେ । ବନ, ପାହାଡ଼, ପର୍ବତ କିଛି ଆପଣଙ୍କ ଦୃଷ୍ଟିକୁ ପ୍ରତିହତ କରିପାରିବ ନାହିଁ ।"

ଏହା କହି ଶକ୍ର ସ୍ୱର୍ଗକୁ ପ୍ରସ୍ଥାନ କଲେ ଓ ରାଜା ଶିବ ନିଜର ପରିଜନଙ୍କ ସହିତ ପ୍ରାସାଦକୁ ଫେରିଗଲେ । ରାଜା ଚକ୍ଷୁ ଫେରି-ପାଇଥିବା ସମ୍ବାଦରେ ନଗରବାସୀ ଆନନ୍ଦ ଉତ୍ସବ କରି ରାଜାଙ୍କୁ ଦର୍ଶନ କରିବାକୁ ଆସିଲେ । ରାଜା ରାଜ୍ୟର ଲୋକମାନଙ୍କୁ ଡକାଇ ଗୋଟିଏ ବିରାଟ ସଭାରେ ଜଣାଇଦେଲେ, "ଦାନର ପ୍ରଭାବ ତୁମେମାନେ ସ୍ୱଚକ୍ଷୁରେ ଦେଖିଲ । ତେଣୁ ତୁମେ ପ୍ରତିଦିନ ଭୋଜନ ପୂର୍ବରୁ କିଛି ନା କିଛି ଦାନ କରିବ । କେହି କିଛି ମାଗିଲେ ତାକୁ 'ନା' କହିବ ନାହିଁ । ଆତ୍ମତ୍ୟାଗ ହେଉଛି ଶ୍ରେଷ୍ଠ ତ୍ୟାଗ । ଦେଖ, ମୁଁ ଯୋଡ଼ାଏ ପାର୍ଥିବ ଚକ୍ଷୁ ଦାନ କରିଥିବାରୁ ସ୍ୱର୍ଗୀୟ ଚକ୍ଷୁ ଲାଭ କରିଛି । ଅନ୍ତରର ସହିତ ଦାନ ଦେବାଦ୍ୱାରା ସ୍ୱର୍ଗର ପଥ ସୁଗମ ହୁଏ ।"

Digitized by srujanika@gmail.com

ରାଜା ପ୍ରତି ପୂର୍ଣ୍ଣିମା ଦିନ ପ୍ରଜାମାନଙ୍କୁ ଏହିପରି ଉପଦେଶ ଦେଇ ରାଜ୍ୟ ଶାସନ କରିବାକୁ ଲଗିଲେ । ପ୍ରଜାମାନେ ତାହା ମାନି ଦାନପରାୟଣ ହେବାରୁ ସେମାନେ ମଧ୍ୟ ସ୍ୱର୍ଗର ଅଧିକାରୀ ହେଲେ ।

***

## କୁକ୍କୁର ଜାତକ

ପୂର୍ବକାଳରେ ଥରେ ବୋଧିସତ୍ତ୍ୱ ବାରାଣସୀରେ ଗୋଟିଏ କୁକ୍କୁରରୂପେ ଜନ୍ମଗ୍ରହଣ କରିଥିଲେ । ସେ ଗୋଟିଏ ମହା-ଶ୍ମଶାନରେ ବାସ କରୁଥିଲେ ଓ ବହୁ ଶତ କୁକ୍କୁରଙ୍କର ଅଧିପତି ହୋଇଥିଲେ ।

ଦିନେ ବାରାଣସୀର ରାଜା ନଗରଭ୍ରମଣ ଉଦ୍ଦେଶ୍ୟରେ ଗାଡ଼ିରେ ବସି ବାହାରିଲେ । ଚାରିଟି ସୁନ୍ଦର ଧଳା ଘୋଡ଼ା ଗାଡ଼ିରେ ଯୋଚି ହୋଇଥିଲେ । ଘୋଡ଼ାମାନଙ୍କର ଲଗାମ ମଧ୍ୟ ସୁନ୍ଦର ଚମଡ଼ାରେ ତିଆରି ହୋଇଥିଲା । ରାଜା ଦିନଯାକ ନଗରଭ୍ରମଣ କରି ନଅରକୁ ଫେରିଆସିଲେ । ଭୃତ୍ୟମାନେ ଘୋଡ଼ାମାନଙ୍କ ମୁହଁରୁ ଲଗାମ ଖୋଲି ସେମାନଙ୍କୁ ଘୋଡ଼ାଶାଳାକୁ ନେଇଗଲେ ଓ ଲଗାମଗୁଡ଼ିକୁ ଅଗଣାରେ ପକାଇଦେଲେ । ରାତିରେ ବୃଷ୍ଟି ହେବାରୁ ଲଗାମରେ ପାଣି ପଡ଼ି ସେଗୁଡ଼ିକ ନରମ ହୋଇଗଲା ।

ରାଜପ୍ରାସାଦରେ କେତେଗୁଡ଼ିଏ କୁକ୍କୁର ଥିଲେ । ରାଜାଙ୍କର ସେଗୁଡ଼ିକ ଅତି ପ୍ରିୟ ଥିଲେ । ସେମାନଙ୍କର ଯତ୍ନ ନେବା ପାଇଁ ଅନେକ ଭୃତ୍ୟ ନିଯୁକ୍ତ ଥିଲେ ଓ ସେମାନଙ୍କୁ ଉତ୍ତମ ଖାଦ୍ୟ ଦିଆ-

Digitized by srujanika@gmail.com

ଯାଉଥିଲା । ତେଣୁ ସେମାନେ ଖୁବ୍ ସୁସ୍ଥ ଓ ସବଳ ଥିଲେ ଏବଂ ସେମାନଙ୍କର ରୂପ ମଧ୍ୟ ସୁନ୍ଦର ଥିଲା ।

ରାତିରେ କୁକ୍କୁରମାନେ ଅଗଣାରେ ବୁଲୁବୁଲୁ ଏହି ଲଗାମ-ଗୁଡ଼ିକୁ ଦେଖି ସେଗୁଡ଼ିକୁ ଚୋବାଇବାରେ ଲାଗିଲେ । କିଛି ସମୟ ପରେ କୁକ୍କୁରମାନେ ଶୋଇବାକୁ ଚାଲିଗଲେ ।

ସକାଳ ହେଲା । ଭୃତ୍ୟମାନେ ଦେଖିଲେ ଯେ ଲଗାମ ପ୍ରଭୃତି ଚମଡ଼ା ଜିନିଷକୁ କୁକ୍କୁରମାନେ କାମୁଡ଼ି ନଷ୍ଟ କରି ଦେଇଅଛନ୍ତି । କେଉଁ କୁକ୍କୁରମାନେ ଏହା କରିଅଛନ୍ତି ତାହା ସେମାନେ ଜାଣି ନ ଥିଲେ । ସେମାନେ ରାଜାଙ୍କୁ ଜଣାଇଲେ—"କୁକ୍କୁରମାନେ ଆସି ଲଗାମକୁ ନଷ୍ଟ କରି ପକାଇଅଛନ୍ତି ।" ରାଜା ସଙ୍ଗେ ସଙ୍ଗେ ଆଦେଶ ଦେଲେ, "ଯାଅ ! ନଗରରେ ଯେଉଁଠାରେ କୁକ୍କୁର ଦେଖିବ, ତାକୁ ବଧ କରିବ ।"

ରାଜାଦେଶରେ ଭୃତ୍ୟମାନେ ସହରଯାକ ବୁଲି କୁକ୍କୁର-ମାନଙ୍କୁ ମାରିବାକୁ ଲାଗିଲେ । ଯେଉଁଠାରେ କୁକ୍କୁର ଦେଖାଗଲା, ସେଠାରେ ତାକୁ ହତ୍ୟା କରାଗଲା । ଯେଉଁମାନେ ଭୃତ୍ୟମାନଙ୍କ ଦୃଷ୍ଟି ଏଡ଼ାଇ ରହିଥିଲେ ସେମାନେ ମହାଶ୍ମଶାନକୁ ଯାଇ ବୋଧିସତ୍ତ୍ୱଙ୍କୁ ଜଣାଇଲେ, "ମହାଭାଗ ! ଆମମାନଙ୍କର ବଂଶ ନିର୍ମୂଳ ହେବାକୁ ବସିଛି । କେତେକ କୁକ୍କୁର ନଅର ଅଗଣାରେ ଥିବା ଲଗାମ ନଷ୍ଟ କରିଥିବାରୁ ରାଜା ସବୁ କୁକ୍କୁରଙ୍କୁ ବିନାଶ କରିବା ପାଇଁ ଆଦେଶ ଦେଇଅଛନ୍ତି । ରାଜାଙ୍କ ଭୃତ୍ୟମାନେ ସହରଯାକ ବୁଲି ଆମମାନଙ୍କୁ ବଧ କରିବାରେ ଲାଗିଅଛନ୍ତି । ଆମେ ମହା ବିପଦରେ ପଡ଼ିଅଛୁ । ଆପଣ ଏହାର ପ୍ରତିକାର ନ କଲେ ଆଉ ରକ୍ଷା ନାହିଁ ।"

Digitized by srujanika@gmail.com

ବୋଧିସତ୍ତ୍ୱ ଚିନ୍ତା କରିବାକୁ ଲାଗିଲେ, "ନଅର ଘରପାଖେ ପ୍ରହରୀମାନେ ଦିନରାତି ଜଗିରହିଥାନ୍ତି । ତେଣୁ ବାହାରୁ କୌଣସି କୁକୁର ନଅର ଅଗଣାରେ ପ୍ରବେଶ କରି ଲଗାମ ଖାଇଥିବା ଅସମ୍ଭବ । ରାଜାଙ୍କ ନଅର ଭିତରେ ଯେଉଁ ଜାତିଆ କୁକୁରମାନେ ପୋଷା ହୋଇ ରହିଛନ୍ତି, ସେହିମାନେ ନିଶ୍ଚୟ ଏହି କାର୍ଯ୍ୟ କରିଥିବେ । କିନ୍ତୁ ରାଜାଙ୍କ ଆଦେଶରେ ସହରରେ ବୁଲୁଥିବା ନିର୍ଦ୍ଦୋଷ କୁକୁରମାନଙ୍କୁ ବଧ କରାଯାଉଅଛି । ଦୋଷୀମାନେ ନିଶ୍ଚିନ୍ତ ଥିବାସ୍ଥଳେ ନିର୍ଦ୍ଦୋଷଙ୍କୁ ଦଣ୍ଡ ଦେବା ଘୋର ଅନ୍ୟାୟ । ପ୍ରକୃତ ଦୋଷୀଙ୍କୁ ବାହାର କରି ଜାତିଭାଇଙ୍କ ଜୀବନ ରକ୍ଷା କରିବା ମୋର କର୍ତ୍ତବ୍ୟ ।" ତେଣୁ ବୋଧିସତ୍ତ୍ୱ ସେମାନଙ୍କୁ ଶ୍ମଶାନରେ ଅପେକ୍ଷା କରିବାକୁ କହି ନିଜେ ରାଜପ୍ରାସାଦ ଆଡ଼କୁ ଏକାକୀ ଗଲେ ।

ବୋଧିସତ୍ତ୍ୱଙ୍କ ଅନ୍ତରରେ କୌଣସି ପ୍ରାଣୀ ପ୍ରତି ହିଂସା ବା ଦ୍ୱେଷ ନ ଥିଲା । ସେ ରାଜପଥକୁ ଆସି କହିଲେ, "ମୁଁ ରାଜ-ଦର୍ଶନକୁ ଯାଉଛି । ମୋତେ କେହି ପ୍ରହାର କର ନାହିଁ । ଧର୍ମର ଜୟ ହେଉ ।" ତାଙ୍କର ଏହି କଥା ଶୁଣି ତାଙ୍କୁ କେହି ଆଘାତ କଲେ ନାହିଁ; ବରଂ ତାଙ୍କ ପ୍ରତି ଲୋକମାନଙ୍କର ଶ୍ରଦ୍ଧା ଜାତ ହେଲା ।

ସେତେବେଳକୁ ରାଜା ସିଂହାସନରେ ବସିଥିଲେ । ବୋଧିସତ୍ତ୍ୱ ଅନ୍ୟ କାହାରି ଆଡ଼କୁ ନ ଚାହିଁ ବେଗରେ ରାଜାଙ୍କ ସିଂହାସନ ତଳକୁ ପଶିଗଲେ । ରାଜାଙ୍କ ପାର୍ଶ୍ୱଚରମାନେ ବୋଧିସତ୍ତ୍ୱଙ୍କୁ ସିଂହାସନତଳୁ ଟାଣିଆଣି ବାହାର କରିଦେବାକୁ ଉଦ୍ୟତ ହେଲେ; କିନ୍ତୁ ରାଜା ସେମାନଙ୍କୁ ବାରଣ କଲେ । ଏଥିରେ ବୋଧିସତ୍ତ୍ୱ ଆଶ୍ୱସ୍ତ ହୋଇ ରାଜାଙ୍କ ସମ୍ମୁଖକୁ ଆସି ପ୍ରଣାମପୂର୍ବକ କହିଲେ,

Digitized by srujanika@gmail.com

"ମହାରାଜ ! ଆପଣ ଧର୍ମାସନରେ ବସି ଦୋଷୀକୁ ଦଣ୍ଡ ଦେଉଛନ୍ତି । ତେଣୁ ମୁଁ ଆପଣଙ୍କୁ କଛି କହିବାକୁ ସାହସ କରୁଅଛି । ଆପଣ ସମସ୍ତ କୁକ୍କୁରଙ୍କୁ ବିନାଶ କରିବାପାଇଁ ଆଦେଶ ଦେଇଛନ୍ତି କି ?"

ରାଜା ଉତ୍ତର କଲେ, "ହଁ, ମୁଁ ସେ ଆଦେଶ ଦେଇଅଛି । ସେମାନେ ମୋ ଗାଡ଼ିର ଚମଡ଼ା ଜିନଷ ଖାମୁଡ଼ି ନଷ୍ଟ କରି ଦେଇ-ଥିବାରୁ ମୁଁ ଏ ଆଦେଶ ଦେଇଅଛି ।"

ତହୁଁ ବୋଧିସତ୍ତ୍ୱ କହିଲେ, "ମହାରାଜ ! କେଉଁ କେଉଁ କୁକ୍କୁର ଏହି ମନ୍ଦ କାର୍ଯ୍ୟ କରିଅଛନ୍ତି, ତାହା ଜାଣିଛନ୍ତି କି ?"

ରାଜା ଉତ୍ତର କଲେ, "ନା, ତା ମୁଁ ଜାଣିବାକୁ ଚେଷ୍ଟା କରିନାହିଁ ।"

ବୋଧିସତ୍ତ୍ୱ କହିଲେ, "ମହାରାଜ ! ନ୍ୟାୟ ବିଚାର କରି ଦୋଷୀକୁ ଦଣ୍ଡ ଦେବା ଆପଣଙ୍କର କର୍ତ୍ତବ୍ୟ । ତାହା ନ କରି ଯେକୌଣସି କୁକ୍କୁର ଦେଖିଲେ ତାକୁ ବଧ କରିବା ପାଇଁ ଆଦେଶ ଦେବା ଉଚିତ ହେଲା କି ? ଆପଣେ କଅଣ ନଗରର ସମସ୍ତ କୁକ୍କୁରଙ୍କୁ ବଧ କରିବାକୁ ଆଦେଶ ଦେଇଅଛନ୍ତି ? ନା କୌଣସି କୌଣସି କୁକ୍କୁର ଏହି ଦଣ୍ଡରୁ ମୁକ୍ତ ପାଉଅଛନ୍ତି ।"

ରାଜା ଉତ୍ତର କଲେ, "ସମସ୍ତଙ୍କୁ ଯେ ବଧ କରାଯାଉଅଛି, ତାହା ନୁହେଁ । କେତେକଙ୍କୁ ଛାଡ଼ିଦିଆଯାଉଅଛି । ଆମ ନଅରରେ ଥିବା ଜାତିଆ କୁକ୍କୁରମାନଙ୍କୁ ହତ୍ୟା କରାଯାଉନାହିଁ ।"

ବୋଧିସତ୍ତ୍ୱ କହିଲେ, "ମହାରାଜ ! ଆପଣ କହୁଥିଲେ ଯେ ସବୁ କୁକ୍କୁରଙ୍କୁ ବଧ କରିବାକୁ ଆଦେଶ ଦେଇଥିଲେ । ବର୍ତ୍ତମାନ

Digitized by srujanika@gmail.com

କହୁଅଛନ୍ତି ଯେ କେତେକ କୁକ୍କୁରଙ୍କ ପ୍ରତି ଏହି ଆଦେଶ ପ୍ରଯୋଜ୍ୟ ନୁହେଁ । ଆପଣଙ୍କ ନଅରର ପୋଷା କୁକ୍କୁରମାନେ ଏହି ଦଣ୍ଡରୁ ମୁକ୍ତ । ତେଣୁ ଆପଣ ରାଜା ହୋଇ ଚାରୋଟି ମହାପାପ କରୁଛନ୍ତି—

ପ୍ରଥମତଃ ଆପଣ ପକ୍ଷପାତ ଦୋଷରେ ଦୋଷୀ । ନଅରର କୁକ୍କୁରମାନଙ୍କୁ ଛାଡ଼ି ଅନ୍ୟ କୁକ୍କୁରମାନଙ୍କୁ ବଧ କରିବାକୁ ଆଦେଶ ଦେଇ ଆପଣ ପକ୍ଷପାତ କରିଅଛନ୍ତି । ଦୁର୍ବଳଙ୍କୁ ବଧ କରି ସବଳଙ୍କୁ ଛାଡ଼ିଦେବା ଏକ ପାପ । ଦ୍ୱିତୀୟତଃ ଏହାଦ୍ୱାରା ଇତର କୁକ୍କୁରମାନଙ୍କ ପ୍ରତି ଆପଣଙ୍କର ଘୃଣା ପ୍ରକାଶ ପାଉଅଛି । ରାଜା ସମସ୍ତଙ୍କ ପ୍ରତି ସମାନ ବ୍ୟବହାର କରିବା ଉଚିତ । ଜଣକୁ ଆଦର କରି ଅନ୍ୟ ଜଣକୁ ଘୃଣା କରିବା ଅନୁଚିତ । ତୃତୀୟତଃ ଆପଣ ପ୍ରକୃତ ଘଟଣା ନବୁଝି ଦଣ୍ଡାଦେଶ ଦେଇଅଛନ୍ତି । ତେଣୁ ଆପଣ ଅଜ୍ଞତା ଦୋଷରେ ଅପରାଧୀ । ଚତୁର୍ଥତଃ ଆପଣଙ୍କ ଅନ୍ତରରେ ଭୟ ଅଛି । ଯେପରି ଭୟ ନ ଥିଲେ ସମସ୍ତ କୁକ୍କୁରଙ୍କୁ ବଧ କରିବାକୁ କହି ନ ଥାନ୍ତେ । ଭୟ ମଧ୍ୟ ରାଜାଙ୍କ ପକ୍ଷରେ ଏକ ଦୋଷ ।"

ରାଜା ବୋଧିସତ୍ତ୍ୱଙ୍କର ଏହି ଯୁକ୍ତି ଶୁଣି ବୁଝିପାରିଲେ ଯେ ଏ ସାମାନ୍ୟ କୁକ୍କୁର ନୁହନ୍ତି । ତେଣୁ ସେ କହିଲେ, "ମହାଭାଗ ! ଆପଣ ଯଥାର୍ଥ ଜ୍ଞାନୀ । ଆପଣ ପ୍ରକୃତ ଅପରାଧୀ କୁକ୍କୁରମାନଙ୍କୁ ଚିହ୍ନାଇ ପାରିବେ କି ?"

ବୋଧିସତ୍ତ୍ୱ କହିଲେ, "ହଁ, ଆପଣଙ୍କ ନଅରରେ ଥିବା ଜାତିଆ କୁକ୍କୁରମାନେ ହିଁ ଏ କୁକର୍ମ କରିଅଛନ୍ତି ।"

ରାଜା ବିସ୍ମିତ ହୋଇ କହିଲେ, "ଆପଣ ଏଥିର ପ୍ରମାଣ ଦେଇପାରିବେ ?"

Digitized by srujanika@gmail.com

ବୋଧିସତ୍ତ୍ୱ କିଛି ଦହି ଓ କୁଶ ମଗାଇଲେ । କୁଶକୁ ବାଟି ଦହି ସହିତ ମିଶାଇ ଦିଆଗଲା । ତତ୍ପରେ ବୋଧିସତ୍ତ୍ୱ କହିଲେ, "ମହାରାଜ ! ଏବେ ନଅରର କୁକ୍କୁରମାନଙ୍କୁ ଅଣାଇ ଏଥିରୁ କିଛି କିଛି ପିଇବାକୁ ଦିଅନ୍ତୁ ।"

ତାହାହିଁ କରାଗଲା । କିଛି ସମୟ ପରେ ସେମାନେ ବାନ୍ତି କରିବାରୁ ସେଥିରେ ଟିକି ଟିକି ଚମଡ଼ା ଦେଖାଗଲା । ଏବେ ଏଇମାନେ ଯେ ପ୍ରକୃତରେ ଲଗାମକୁ ଖାଇଥିଲେ ଏ ବିଷୟରେ ରାଜାଙ୍କର ଲବମାତ୍ର ସନ୍ଦେହ ରହିଲା ନାହିଁ । ସେ ବୋଧିସତ୍ତ୍ୱଙ୍କୁ ପ୍ରଶଂସା କରି ତାଙ୍କ ମସ୍ତକ ଉପରେ ରାଜଛତ୍ର ଧରାଇଲେ ।

ବୋଧିସତ୍ତ୍ୱ ରାଜ୍ୟଶାସନ ବିଷୟରେ ରାଜାଙ୍କୁ ନାନା ଉପଦେଶ ଦେଇ ବିଦାୟ ନେଲେ । ରାଜାଙ୍କ ଆଦେଶରେ ରାଜ୍ୟରେ ଜୀବବଧ ନିଷେଧ କରାଗଲା ଓ କୁକ୍କୁରମାନଙ୍କୁ ରାଜକୋଷରୁ ଉତ୍ତମ ଖାଦ୍ୟ ଯୋଗାଇଦେବାର ବ୍ୟବସ୍ଥା ହେଲା । ***

## ମନୋଜ ଜାତକ

ଏକ ଜନ୍ମରେ ବୋଧିସତ୍ତ୍ୱ ସିଂହରୂପେ ବାରଣସୀ ରାଜ୍ୟରେ ଜନ୍ମିଥିଲେ । ସେ ନିଜର ପତ୍ନୀ ଏବଂ ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ସହିତ ବନରେ ବାସ କରୁଥିଲେ । ପୁତ୍ରଟିର ନାମ ମନୋଜ ।

Digitized by srujanika@gmail.com

ସେ ବୟଃପ୍ରାପ୍ତ ହେବାରୁ ଗୋଟିଏ ସିଂହୀକୁ ବିବାହ କଲା । ଏବେ ବୋଧିସତ୍ତ୍ୱଙ୍କ ପରିବାରରେ ପାଞ୍ଚପ୍ରାଣୀ ହେଲେ । ମନୋଜ ପ୍ରତିଦିନ ବନକୁ ଯାଇ ମହିଷ, ହରିଣ ପ୍ରଭୃତି ମାରି ଆଣୁଥିଲା ଓ ସେମାନଙ୍କର ମାଂସକୁ ପରିବାରର ସମସ୍ତେ ଖାଉଥିଲେ ।

ଦିନେ ସେ ଶିକାର କରିବାକୁ ଯାଉଥିବା ସମୟରେ ବାଟରେ ଶିୟେ ନାମକ ଏକ ଶୃଗାଳ ସହିତ ତାର ସାକ୍ଷାତ ହେଲା । ଶୃଗାଳ ମନୋଜର ଏତେ ନିକଟକୁ ଆସିଥିଲା ଯେ ତାର ପଳାଇଯିବାର ଆଶା ନ ଥିଲା । ସେ ହଠାତ୍ ମନୋଜର ପାଦତଳେ ଲମ୍ବ ହୋଇ ପଡ଼ିଗଲା ଓ କହିଲା, "ମୁଁ ଆପଣଙ୍କ ସଙ୍ଗେ ସଙ୍ଗେ ରହି ସେବା କରିବି । ମୋତେ ଆପଣଙ୍କ ଭୃତ୍ୟରୂପେ ଗ୍ରହଣ କଲେ ମୁଁ କୃତାର୍ଥ ହେବି ।"

ମନୋଜ ଶୃଗାଳର କଥାରେ ଭୁଲିଯାଇ ସେଦିନ ତାକୁ ନିଜର ବାସସ୍ଥାନକୁ ସଙ୍ଗରେ ନେଇଗଲା । ତାହାକୁ ଦେଖି ବୋଧିସତ୍ତ୍ୱ ପୁଅକୁ କହିଲେ, "ଆରେ ମନୋଜ, ଶୃଗାଳମାନେ ସ୍ୱଭାବତଃ ଦୁଷ୍ଟପ୍ରକୃତିକ । ସେମାନେ ଅନ୍ୟାୟ ଆଚରଣ କରନ୍ତି; କୁପରାମର୍ଶ ଦିଅନ୍ତି । ତେଣୁ ଏହାକୁ ତୁ ଦୂର କରି ଦେ ।" କିନ୍ତୁ ମନୋଜ ପିତାଙ୍କର କଥା ନ ମାନି କହିଲା, "ସେ ମୋର ସେବା କରିବ । ଗୋଟିଏ ଭୃତ୍ୟ ଥିଲେ ଅନେକ ସାହାଯ୍ୟ ମିଳିବ । ଆମର ଭୋଜନ ପରେ ଯାହା ବଳୁଛି, ତାହାହିଁ ତା ପକ୍ଷରେ ଯଥେଷ୍ଟ ହେବ ।"

ମନୋଜ ସହିତ ଶୃଗାଳର ଭାବ ଦିନକୁ ଦିନ ବଢ଼ିଲା । ତାର ତୋଷାମଦିଆ କଥାରେ ମନୋଜ ଏକବାରେ ତାର ବଶ

Digitized by srujanika@gmail.com

ହୋଇଗଲା । ଦିନେ ଶିଗାଳ ମନୋଜକୁ କହିଲା, "ଆପଣଙ୍କ ଆଶ୍ରୟରେ ରହିବାଦିନୁ ମୁଁ ଅନେକ ଜୀବର ମାଂସ ଖାଇଲିଣି; କିନ୍ତୁ ଅଶ୍ୱମାଂସ ଖାଇନାହିଁ । ଶୁଣିଛି ଯେ ଅଶ୍ୱମାଂସ ଅତି ଉତ୍କୃଷ୍ଟ ।"

ମନୋଜ କହିଲା, "ଅଶ୍ୱର ମାଂସ ସୁସ୍ୱାଦୁ ସତ; କିନ୍ତୁ ଏ ବନରେ ଅଶ୍ୱ ଦେଖାଯାଉ ନାହାନ୍ତି ।" ଶୃଗାଳ ସଙ୍ଗେ ସଙ୍ଗେ ପ୍ରସ୍ତାବ ଦେଲା, "ବାରାଣସୀ ନିକଟରେ ଗଙ୍ଗା ନଦୀତଟକୁ ଗଲେ ଯଥେଷ୍ଟ ଅଶ୍ୱ ମିଳିପାରିବେ ।"

ଶୃଗାଳ ମନୋଜକୁ ଗଙ୍ଗାତଟକୁ ନେଇ ନଦୀରେ ସ୍ନାନ କରୁଥିବା ଅଶ୍ୱମାନଙ୍କୁ ଦେଖାଇଦେଲା । ମନୋଜ କିଛି ସମୟ ଅପେକ୍ଷା କଲା । ଅଶ୍ୱମାନେ ନଦୀରୁ ବାହାରି ସହର ଆଡ଼କୁ ଯିବା-ବେଳେ ସେ ଗୋଟିଏ ଅଶ୍ୱକୁ ମାରି ନିଜ ଗୁହାକୁ ନେଇଗଲା ।

ସନ୍ଧ୍ୟାବେଳେ ସମସ୍ତେ ଭୋଜନରେ ବସିଲେ । ବୋଧିସତ୍ତ୍ୱ ପଚାରିଲେ, "ବାପା ମନୋଜ, ଆଜି କାହୁଁ ଅଶ୍ୱଟିଏ ଆଣିଲୁ ?" ମନୋଜ ସମସ୍ତ ଘଟନା ବର୍ଣ୍ଣନା କରିବାରୁ ବୋଧିସତ୍ତ୍ୱ କହିଲେ, "ଅଶ୍ୱମାନେ ବନ୍ୟପଶୁ ନୁହନ୍ତି । ନଦୀରେ ଯେଉଁ ଅଶ୍ୱମାନେ ସ୍ନାନ କରୁଥିଲେ, ସେମାନେ ରାଜାଙ୍କର । ତାଙ୍କର ଅଶ୍ୱକୁ ସିଂହ ବଧ କରିଛି ଜାଣିଲେ ସେ ଆମମାନଙ୍କର ବିନାଶ ପାଇଁ ଚେଷ୍ଟା କରିବେ । ଅନିଷ୍ଟକାରୀ ଜୀବମାନଙ୍କୁ ମାରିବା ସକାଶେ ସେମାନଙ୍କର ନାନା ଉପାୟ ଅଛି । ତାଙ୍କର ଧନୁର୍ଦ୍ଧାରୀ ସୈନ୍ୟମାନେ ଶର ମାରି ଅକ୍ଳେଶରେ ଆମମାନଙ୍କୁ ବଧ କରିପାରିବେ । ତୁ ଆଉ ସେ ପାଖକୁ ଯିବୁ ନାହିଁ କି ଅଶ୍ୱବଧ କରିବୁ ନାହିଁ । ଆଉ ଗୋଟିଏ କଥା; ଅଶ୍ୱମାଂସ ଖାଇଲେ ଆମମାନଙ୍କର ଆୟୁହାନି ହେବ ।"

Digitized by srujanika@gmail.com

ମନୋଜ ପିତାଙ୍କର ଏହି ପରାମର୍ଶ ଶୁଣିଲା ନାହିଁ । ସେ ଶୃଗାଳ ସହିତ ଗଙ୍ଗାତଟକୁ ଯାଇ ପ୍ରତିଦିନ ଅଶ୍ୱ ବଧ କରି ଆଣିବାକୁ ଲାଗିଲା । ସନ୍ତ୍ରୀମାନେ ରାଜାଙ୍କୁ ଜଣାଇଲେ, "ମହାରାଜ ! ଏବେ କେତେଦିନ ହେଲା ଗୋଟାଏ ସିଂହ ଆସି ଉପଦ୍ରବ କରୁଛି । ସେ ପ୍ରତିଦିନ ଅଶ୍ୱ ବଧ କରି ନେଇଯାଉଅଛି ।"

ରାଜା ଏହା ଶୁଣି ନଗର ମଧ୍ୟରେ ଗୋଟିଏ ପ୍ରକାଣ୍ଡ ପୁଷ୍କରିଣୀ ଖୋଳାଇଲେ । ଅଶ୍ୱମାନଙ୍କୁ ସ୍ନାନ ପାଇଁ ନଦୀକୁ ନ ନେଇ ସେହି ପୁଷ୍କରିଣୀରେ ସ୍ନାନ କରାଇବାର ବ୍ୟବସ୍ଥା ହେଲା । କିନ୍ତୁ ଶୃଗାଳର ପରାମର୍ଶରେ ମନୋଜ ନଗର ମଧ୍ୟରେ ପ୍ରବେଶ କରି ଅଶ୍ୱମାନଙ୍କୁ ମାରିବାକୁ ଲାଗିଲା । ତାର ଯଥେଷ୍ଟ ବଳ ଥିବାରୁ ସେ ସହଜରେ ନଗର ପ୍ରାଚୀର ଅତିକ୍ରମ କରିପାରୁଥିଲା । କ୍ରମେ ତାର ଦୁଃସାହସ ଏତେ ବୃଦ୍ଧି ପାଇଲା ଯେ ସେ ରାଜାଙ୍କ ଅଶ୍ୱଶାଳାରୁ ମଧ୍ୟ ଅଶ୍ୱ ନେବାକୁ ଲାଗିଲା ।

ଶେଷରେ ରାଜା ସ୍ଥିର କଲେ, "ଏ ଦୁଷ୍ଟ ସିଂହକୁ ବଧ ନ କଲେ ଅଶ୍ୱମାନଙ୍କର ଜୀବନ ନିରାପଦ ହେବ ନାହିଁ ।" ତେଣୁ ସେ ରାଜ୍ୟର ଶ୍ରେଷ୍ଠ ବାଣୁଆକୁ ଡକାଇ କହିଲେ, "ଗୋଟାଏ ସିଂହ ନଗର ମଧ୍ୟରେ ପ୍ରବେଶ କରି ଆମର ଅଶ୍ୱମାନଙ୍କୁ ବିନାଶ କରୁଅଛି । ତୁମେ ତାହାକୁ ମାରିପାରିଲେ ଉପଯୁକ୍ତ ପୁରସ୍କାର ପାଇବ ।"

ବାଣୁଆ ଏଥିରେ ସ୍ୱୀକୃତ ହୋଇ ସିଂହର ଆସିବା ବାଟରେ ଗୋଟିଏ ମଞ୍ଚା ପ୍ରସ୍ତୁତ କଲା ଓ ତାହା ଉପରେ ଧନୁଶର ଧରି ଲୁଚି-ରହିଲା । ରାତିରେ ମନୋଜ ଶୃଗାଳକୁ ସହରଠାରୁ କିଛି ଦୂରରେ ଗୋଟିଏ ଶ୍ମଶାନରେ ରଖାଇ ଅଶ୍ୱ ନେବା ପାଇଁ ସହର ପାଖକୁ

Digitized by srujanika@gmail.com

ଆସିଲା ଓ ନଗରର ପ୍ରାଚୀରକୁ ଡେଇଁ ଭିତରେ ପ୍ରବେଶ କଲା । ବାଣୁଆ ମନୋଜର ଶକ୍ତି ଓ ବେଗ ଦେଖି ସେତେବେଳେ ତା' ଉପରକୁ ଶର ମାରିଲା ନାହିଁ । ମନୋଜ ଅଶ୍ୱଶାଳାରେ ଗୋଟିଏ ଅଶ୍ୱ ବଧ କରି ତାକୁ ପିଠିରେ ପକାଇ ନଗରର ବାହାରକୁ ଯିବା ଉଦ୍ଦେଶ୍ୟରେ ବାହାରିଲା । ଅଶ୍ୱର ଭାର ହେତୁରୁ ତାର ଗତି ମନ୍ଥର ଥିଲା । ବାଣୁଆ ଏହି ଅବସରରେ ତାକୁ ଶର ମାରିଲା । ଶରଟି ମନୋଜର ଏକ ପାର୍ଶ୍ୱରୁ ଅପରପାର୍ଶ୍ୱ ଭେଦ କରି ବାହାରିଗଲା ଓ ସେ ତଳେ ପଡ଼ିଯାଇ ଚିତ୍କାର କଲା, "ଏ ଶରାଘାତରେ ମୋର ପ୍ରାଣ ଗଲା ।"

ବାଣୁଆ ପୁଣି ଶର ମାରିବା ପାଇଁ ଧନୁର ଗୁଣରେ ଟଙ୍କାର କଲା । ଶ୍ମଶାନରେ ଥାଇ ଶୃଗାଳ ମନୋଜର ଚିତ୍କାର ଓ ଧନୁର ଟଙ୍କାର ଶୁଣି ଚିନ୍ତା କଲା, "ବାଣୁଆର ଶରରେ ମନୋଜର ମୃତ୍ୟୁ-ହେବା ନିଶ୍ଚିତ । ମୃତପ୍ରାଣୀ ସହିତ କି ବନ୍ଧୁତା ? ମୁଁ ଏବେ ବଣର ମୋ ପୂର୍ବ ବାସସ୍ଥାନକୁ ଯାଏଁ ।"

ଶରୀରରେ ଆଘାତ ପାଇ ସୁଦ୍ଧା ମନୋଜ ସମସ୍ତ ଶକ୍ତି ପ୍ରୟୋଗ କରି ଅଶ୍ୱ ସହିତ ପଳାଇଗଲା । କିନ୍ତୁ ଗୁହା ନିକଟରେ ପହଞ୍ଚିଲା ବେଳକୁ ତା ଦେହରେ ଆଉ ବଳ ନ ଥିଲା । ଅଶ୍ୱଟି ତା ମୁହଁରୁ ଖସିପଡ଼ିଲା ଓ ସେ ନିଜେ ଛଟପଟ ହୋଇ ପ୍ରାଣତ୍ୟାଗ କଲା । ବୋଧିସତ୍ତ୍ୱ, ମନୋଜର ମାଆ, ସ୍ତ୍ରୀ ଓ ଭଉଣୀ ଦଉଡ଼ି ଆସି ଦେଖିଲେ ଯେ ତାର ପିଣ୍ଡରେ ପ୍ରାଣ ନାହିଁ ।

ବୋଧିସତ୍ତ୍ୱ କହିଲେ—"ଯିଏ ଦୁଷ୍ଟ ଲୋକର ପରାମର୍ଶ ଶୁଣେ, ତାର ଭାଗ୍ୟ ମନ୍ଦ । ଆଜ ଯେ ମନୋଜ ମଲା, ତାର କାରଣ

Digitized by srujanika@gmail.com

ହେଉଛି, ସେ ଦୁଷ୍ଟ ଗିଦ୍ଧୟୂର ପରାମର୍ଶରେ କାର୍ଯ୍ୟ କଲା; ମୋ କଥା ମାନଲା ନାହିଁ ।"

ମନୋଜର ମାଆ କହିଲା—"ପୁଅ ଯେବେ ଦୁଷ୍ଟ ଲୋକଙ୍କ ସଂସର୍ଗରେ ରହେ, ତେବେ ମାଆର ଜୀବନରେ ସୁଖ କାହୁଁ ଆସିବ ? ଏଇ, ମୋର ମନୋଜ ଲୋକ୍ତ ହୋଇ ମରି ପଡ଼ିଛି । ଦୁଷ୍ଟ ସଙ୍ଗରେ ପଡ଼ି ନ ଥିଲେ ତାର ଏପରି ଦଶା ହୋଇନଥାନ୍ତା ।"

ମନୋଜର ସ୍ତ୍ରୀ କହିଲା—"ମୋର ସ୍ୱାମୀ ପ୍ରକୃତ ବନ୍ଧୁ ଓ ଗୁରୁଜନଙ୍କର କଥା ନ ମାନି ଏ ଅବସ୍ଥା ଭୋଗ କଲେ । ନୀଚ ସଂସର୍ଗର ଫଳ ଏହିପରି ଦୁଃଖଦାୟକ ହୋଇଥାଏ ।"

ମନୋଜର ଭଉଣୀ କହିଲା—"ଉଚ୍ଚକୁଳରେ ଜାତ ହୋଇ ଯେ ନୀଚ ସଙ୍ଗରେ ରହେ ଓ ନୀଚଲୋକର ପରାମର୍ଶ ଶୁଣେ, ତାହା ଭାଗ୍ୟରେ ଏହିପରି ଦୁଃଖ ଆସେ । ମୋର ଭାଇ ନୀଚ ସଙ୍ଗରେ ପଡ଼ିବାରୁ ଆଜ ସେ ବାଣୁଆର ଶରରେ ପ୍ରାଣ ହରାଇଲେ ।" ...

## ଶଶ ଜାତକ

ଏକଜନ୍ମରେ ବୋଧିସତ୍ତ୍ୱ ଗୋଟିଏ ଶଶକରୂପେ ଜନ୍ମଗ୍ରହଣ କରି ବନରେ ବାସ କରୁଥିଲେ । ଏହି ବନର ଏକ ପାର୍ଶ୍ୱରେ ଗୋଟିଏ ପର୍ବତ, ଏକ ପାର୍ଶ୍ୱରେ ଗୋଟିଏ ନଦୀ ଓ ଅନ୍ୟ

Digitized by srujanika@gmail.com

ଏକ ପାର୍ଶ୍ୱରେ ଗୋଟିଏ ଗ୍ରାମ ଥିଲା । ବନ ମଧ୍ୟରେ ବୋଧିସତ୍ତ୍ୱଙ୍କର ତିନିଜଣ ଅନ୍ତରଙ୍ଗ ବନ୍ଧୁ ଥିଲେ । ସେମାନେ ହେଲେ ଗୋଟିଏ ବାନର, ଗୋଟିଏ ଶୃଗାଳ ଓ ଗୋଟିଏ ଓଧ । ଚାରିହେଁଯାକ ଏକତ୍ର ବାସ କରୁଥିଲେ । ଦିନବେଳା ସେମାନେ ବନର ବିଭିନ୍ନ ଅଂଶକୁ ଯାଇ ନିଜ ନିଜର ଖାଦ୍ୟ ସଂଗ୍ରହ କରୁଥିଲେ ଓ ସନ୍ଧ୍ୟାବେଳକୁ ଫେରିଆସି ଏକତ୍ର ବସି ଧର୍ମ ଆଲୋଚନାରେ କିଛି ସମୟ କଟାଉଥିଲେ ।

ଏମାନଙ୍କ ମଧ୍ୟରେ ଶଶକ ସର୍ବାପେକ୍ଷା ବୁଦ୍ଧିମାନ୍ ଓ ଧର୍ମପରାୟଣ ଥିବାରୁ ସେ ଅନ୍ୟମାନଙ୍କୁ ଧର୍ମ ଓ ସଦାଚାର ବିଷୟରେ ଉପଦେଶ ଦେଉଥିଲେ । ସତ୍ୟ କହିବା, ଦାନ କରିବା, ପୁଣ୍ୟ-ତିଥିମାନ ପାଳନ କରିବା ଓ ଧର୍ମର ନିୟମମାନ ମାନି ଚଳିବାକୁ ସେ ଶିକ୍ଷା ଦେଉଥିଲେ । ସେମାନେ ତାଙ୍କର ଉପଦେଶର ମହତ୍ତ୍ୱ ସ୍ୱୀକାର କରୁଥିଲେ ଓ ସେହିପରି ଜୀବନଯାପନ କରିବେ ବୋଲି ପ୍ରତିଜ୍ଞା କରୁଥିଲେ । ଆଲୋଚନା ଶେଷ ହେଲାପରେ ସମସ୍ତେ ନିଜ ନିଜ ବାସସ୍ଥାନକୁ ଚାଲିଯାଉଥିଲେ ।

ଏହିପରି କେତେକ କାଳ ଗତ ହେଲା । ଦିନେ ସମସ୍ତେ ଏକତ୍ର ଥିବା ସମୟରେ ବୋଧିସତ୍ତ୍ୱ ଆକାଶରେ ଚନ୍ଦ୍ରଙ୍କୁ ଚାହିଁ କହିଲେ, "କାଲି ପବିତ୍ର ଉପବାସର ଦିନ । ତୁମେମାନେ ଉପବାସ ପାଳନ କରିବ; ଯଥାସମ୍ଭବ ଦାନ ଦେବ । ଧର୍ମର ନିୟମ ମାନି ଚଳିଲେ ନିଶ୍ଚୟ ତାର ପୁରସ୍କାର ମିଳିବ । ଯଦି କେହି ଭିକ୍ଷା ମାଗିବାକୁ ଆସେ ତାକୁ ନିଜର ଆହାର ଦେଇ ତୃପ୍ତ କରିବ ।" ତିନିହେଁଯାକ ଆନନ୍ଦରେ କହିଲେ, "ନିଶ୍ଚୟ ଆମେମାନେ ଆପଣଙ୍କ ଉପଦେଶ

Digitized by srujanika@gmail.com

ଅନୁସାରେ କାର୍ଯ୍ୟ କରିବୁ ।" ଏହିରେ ସମସ୍ତେ ନିଜ ନିଜ ସ୍ଥାନକୁ ବିଶ୍ରାମ ପାଇଁ ଚାଲିଗଲେ ।

ପରଦିନ ପ୍ରାତଃକାଳରେ ଓଧ ନିଜର ଆହାର ସଂଗ୍ରହ କରିବା ପାଇଁ ଗଙ୍ଗା ନଦୀର ତଟଦେଶକୁ ଗଲା । ସେତେବେଳକୁ ଜଣେ ଧୀବର ନଦୀରୁ ସାତଟି ବଡ଼ ବଡ଼ ମାଛ ଧରି ସେଗୁଡ଼ିକୁ ଗୋଟିଏ ଦଉଡ଼ିରେ ଗୁନ୍ଥି ନଦୀକୂଳ ବାଲିରେ ପୋତି ଦେଇଥିଲା ଓ ଆହୁରି ମାଛ ଧରିବା ପାଇଁ ନଦୀରେ ଦୂର ସ୍ଥାନକୁ ଯାଇଥିଲା । ଓଧ ମାଛର ଗନ୍ଧ ବାରି ବାଲିକୁ ଖୋଳିବାରୁ ମାଛଗୁଡ଼ିକ ଦେଖିଲା । ସେ ଉଚ୍ଚ ସ୍ୱରରେ କହିଲା, "ଏ ମାଛର କେହି ଅଧିକାରୀ ଅଛି କି ?"

ପାଖରେ ଅନ୍ୟ କେହି ନଥିଲେ; ଧୀବର ଦୂରରେ ଥିବାରୁ ସେ ଓଧର ଡାକ ଶୁଣିପାରିଲା ନାହିଁ । ସେ ଏହିପରି ତିନି ଥର କହିଲା, "କିନ୍ତୁ କେହି କିଛି କହିଲେ ନାହିଁ । କୌଣସି ଉତ୍ତର ନ ମିଳିବାରୁ ଓଧ ଦଉଡ଼ିଟିକୁ ଦାନ୍ତରେ ଧରି ମାଛଗୁଡ଼ିକୁ ନିଜ ବାସସ୍ଥାନକୁ ନେଇଗଲା । ସେ ଭାବିଲା, 'ଯଥାସମୟରେ ଏହାକୁ ଖାଇ କ୍ଷୁଧା ନିବୃତ୍ତି କରିବି ।' ସେ ନିଜକୁ ଧାର୍ମିକ ବୋଲି ମନେ କରି ନିଶ୍ଚିନ୍ତରେ ଶୋଇରହିଲା ।

ସେହିପରି ଶୃଗାଳ ଖାଦ୍ୟ ଅନ୍ୱେଷଣରେ ବୁଲୁ ବୁଲୁ ଗୋଟିଏ କୃଷିକ୍ଷେତ୍ରରେ ପହଞ୍ଚିଲା । ସେଠାରେ ଗୋଟିଏ ଛୋଟ ଘର ଦେଖିଲା । ସେଥିରେ କୌଣସି ଲୋକ ନ ଥିଲେ; କିନ୍ତୁ ତା ଭିତରେ ଦୁଇଖଣ୍ଡ ମାଂସ, ଗୋଟିଏ ଗୋଧି ଓ ଘଡ଼ିଟିରେ କିଛି ଦହି ଥିଲା । ସେ ମଧ୍ୟ ତିନି ଥର ଡାକି କହିଲା, "ଏ ଜିନିଷଗୁଡ଼ିକର କେହି ଅଧିକାରୀ ଅଛି କି ?" କିନ୍ତୁ ଜଗୁଆଳି ଦୂରରେ ଥିବାରୁ କୌଣସି

Digitized by srujanika@gmail.com

ଉତ୍ତର ମିଳିଲା ନାହିଁ । ତହୁଁ ସେ ଦହିଘଡ଼ିର ମୁହଁରେ ବନ୍ଧା-ହୋଇଥିବା ଦଉଡ଼ିକୁ ବେକରେ ଗଳାଇ ଘଡ଼ିଟିକୁ ଝୁଲାଇଦେଲା; ମାଂସ ଓ ଗୋଧିକୁ ଦାନ୍ତରେ କାମୁଡ଼ି ଧରି ନିଜ ବସାକୁ ଆସିଲା ଓ ସେଗୁଡ଼ିକୁ ରଖିଦେଇ ଭାବିଲା, 'ବେଳ ହେଲେ ଏହାକୁ ଖାଇବି । ମୁଁ ଧର୍ମମାର୍ଗ ଅନୁସାରେ କାର୍ଯ୍ୟ କରୁଛି ।' ଏହିପରି ଚିନ୍ତା କରି ସେ ଶୋଇବାକୁ ଗଲା ।

ବାନର ବନରେ ବୁଲି କେତେକ ପାଚିଲା ଆମ୍ବ ସଂଗ୍ରହ କରି ନିଜ ବାସସ୍ଥାନକୁ ଫେରିଆସିଲା । ଯଥାସମୟରେ ଖାଇବି ବୋଲି ତାକୁ ରଖିଦେଇ ସେ ଭାବିଲା, 'ମୁଁ ଧର୍ମମାର୍ଗ ମାନି କାର୍ଯ୍ୟ କରୁଛି ।' ଏହା ଭାବି ସେ ମଧ୍ୟ ଶୋଇପଡ଼ିଲା ।

ବୋଧିସତ୍ତ୍ୱ ବନ ମଧ୍ୟରେ ବୁଲି କିଛି କୁଶ ସଂଗ୍ରହ କରି ଭାବିଲେ, 'ଯଥାସମୟରେ ମୁଁ ଏହି କୁଶକୁ ଖାଇବି । କିନ୍ତୁ କେହି ଅତିଥି ଆସି ଖାଇବାକୁ ମାଗିଲେ ତାଙ୍କୁ କଅଣ ଦେବି ? କୁଶ ଅନ୍ୟର ଖାଦ୍ୟ ନୁହେଁ । ତିଳ ବା ତଣ୍ଡୁଳ ମିଳିଥିଲେ ଦେଇ ପାରିଥାନ୍ତି; କିନ୍ତୁ ମୋ ଘରେ ତାହା ନାହିଁ । କଅଣ ଦେଇ ଅତିଥିଙ୍କୁ ସନ୍ତୁଷ୍ଟ କରିବି ?' ଟିକିଏ ଚିନ୍ତା କରି ସେ କହିଉଠିଲେ, 'ହଁ, କୌଣସି ଅତିଥି ଆସି ଖାଇବାକୁ ମାଗିଲେ ମୁଁ ତାଙ୍କୁ ମୋର ମାଂସ ଦେଇ ପାରିବି ।' ସେ ମନେ ମନେ ଏହି ପ୍ରତିଜ୍ଞା କଲେ ।

ବୋଧିସତ୍ତ୍ୱଙ୍କର ଏହି ମହାନ୍ ପ୍ରତିଜ୍ଞାରେ ଶକ୍ରଙ୍କର ଆସନ କମ୍ପି-ଉଠିଲା । ସେ ଧ୍ୟାନବଳରେ ଜାଣିପାରିଲେ ଯେ ଶଶକ ବୋଧିସତ୍ତ୍ୱ ଶରୀର ଦାନ କରିବାକୁ ପ୍ରତିଜ୍ଞା କରିବା ହେତୁରୁ ତାଙ୍କର ଆସନ ଟଳମଳ ହେଉଅଛି । ସେ ବୋଧିସତ୍ତ୍ୱଙ୍କୁ ପରୀକ୍ଷା କରିବାକୁ

Digitized by srujanika@gmail.com

ଖାହାରଲେ । ସେ ବ୍ରାହ୍ମଣବେଶ ଧରି ପ୍ରଥମେ ଓଧର ବାସସ୍ଥାନକୁ ଯାଇ ଛିଡ଼ା ହେଲେ ।

ଓଧ ପଚାରିଲା, "ଆପଣଙ୍କର କଅଣ ଲୋଡ଼ା ?"

ଶକ୍ର ଉତ୍ତର କଲେ, "ଉପବାସ ପରେ ମୋର କିଛି ଭୋଜନ ଆବଶ୍ୟକ । ତାହାହେଲେ ମୁଁ ମୋର ନିତ୍ୟନୈମିତ୍ତିକ ପୂଜା ଇତ୍ୟାଦି କରିପାରିବି ।"

ଓଧ ଉତ୍ତର କଲା, "ମୁଁ ଆପଣଙ୍କୁ କିଛି ଖାଦ୍ୟ ଦେଇ ପାରିବି । ମୁଁ ଗଙ୍ଗା ନଦୀରୁ ସାତଟି ମାଛ ଆଣି ରଖିଛି । ତାହାକୁ ଖାଇ ଆପଣ ଉଦର ତୃପ୍ତି କରିପାରିବେ ।"

ଶକ୍ର କହିଲେ, "ଉତ୍ତମ କଥା ! କାଲି ପର୍ଯ୍ୟନ୍ତ ଅପେକ୍ଷା କରିଥାଅ ।"

ଏହା କହି ଶକ୍ର ଶୃଗାଳର ବାସସ୍ଥାନ ନିକଟରେ ପହଞ୍ଚି ଛିଡ଼ା ହେଲେ । ଶୃଗାଳ ପଚାରିଲା, "ହେ ବ୍ରାହ୍ମଣ ! ତୁମ ଆଗମନର ଉଦ୍ଦେଶ୍ୟ କଣ ?"

ଶକ୍ର ଉତ୍ତର କଲେ, "ଉପବାସ ପରେ ମୋର କିଛି ଖାଦ୍ୟ ଆବଶ୍ୟକ ।"

ଶୃଗାଳ କହିଲା, "ମୁଁ ଆପଣଙ୍କର ଅଭିଳାଷ ପୂରଣ କରି ପାରିବି । ଜଗୁଆଳି ସନ୍ଧ୍ୟାବେଳେ ଖାଇବା ପାଇଁ ମାଂସଭଜା, ଗୋଧି ଓ ଦହି ରଖିଥିଲା । ତାକୁ ଆଣି ରଖିଛି । ଆପଣ ସେଥିରେ ପାରଣା କରନ୍ତୁ ।"

ଶକ୍ର ଉତ୍ତର କଲେ, "କାଲି ପର୍ଯ୍ୟନ୍ତ ଅପେକ୍ଷା କର । ମୁଁ ଯାହା କରିବାର କରିବି ।" ଏହା କହି ସେ ମର୍କଟର ବାସସ୍ଥାନକୁ

Digitized by srujanika@gmail.com

ଯାଇ ସେହିପରି କିଛି ଆହାର ଖୋଜିବାରୁ ମର୍କଟ କହିଲା, "ମୁଁ ଆପଣଙ୍କୁ କିଛି ଖାଦ୍ୟ ଦେଇପାରିବି । ପାଚିଲା ଆମ୍ବ ଅଛି । ତାହାକୁ ଖାଇ, ନଦୀର ଜଳ ପିଇ ବୃକ୍ଷର ସୁଶୀତଳ ଛାୟାରେ ବିଶ୍ରାମ କରନ୍ତୁ ।"

ଶକ୍ର ତାହାକୁ ମଧ୍ୟ 'କାଲି ପର୍ଯ୍ୟନ୍ତ ଅପେକ୍ଷା କର' ବୋଲି କହି ଶଶକର ଦ୍ୱାରରେ ଉପସ୍ଥିତ ହେଲେ । ଶଶକ ମଧ୍ୟ ତାହାଙ୍କର ଆଗମନର କାରଣ ପଚାରିବାରୁ ଶକ୍ର କହିଲେ, "ମୋର କିଛି ଭୋଜନ ଆବଶ୍ୟକ ।"

ଏହା ଶୁଣିଲାକ୍ଷଣି ଶଶକ ଆନନ୍ଦିତ ହୋଇ କହିଲା, "ହେ ବ୍ରାହ୍ମଣ ! ଆପଣ ଆହାର ଉଦ୍ଦେଶ୍ୟରେ ଆସିଥିବାର ଶୁଣି ମୁଁ କୃତାର୍ଥ ହେଲି । ଆଜି ମୁଁ ଯେଉଁ ଦାନ ଦେବାକୁ ଇଚ୍ଛା କରୁଛି, ତାହା ଏଥିପୂର୍ବରୁ କେବେ ଦେଇ ନଥିଲି । କିନ୍ତୁ ମୋର ଅନୁରୋଧ ଆପଣ ଧର୍ମଶାସ୍ତ୍ର ଲଙ୍ଘନ କରି ଜୀବହତ୍ୟା କରିବେ ନାହିଁ । ଦୟାକରି କିଛି କାଷ୍ଠ ସଂଗ୍ରହ କରି ଅଗ୍ନି ଜାଳନ୍ତୁ । ମୁଁ ସେଥିରେ ପ୍ରବେଶ କରିବି । ତାପରେ ଆପଣ ମୋର ଦଗ୍ଧଶରୀରର ମାଂସ ଭୋଜନ କରିବେ ।"

ଶକ୍ରଙ୍କ ମାୟାରେ ଅଗ୍ନି ଜଳିଉଠିଲା । ବୋଧିସତ୍ତ୍ୱ ନିଜର କୁଶାସନରୁ ଉଠି ନିଜ ଦେହକୁ ତିନି ଥର ଝାଡ଼ିଦେଲେ । କାଳେ ତାଙ୍କ ଲୋମରେ କୌଣସି କୀଟ ରହିଥିବ ଓ ଅଗ୍ନିରେ ପ୍ରବେଶ କଲେ ଦଗ୍ଧ ହୋଇଯିବ, ଏହି ଆଶଙ୍କାରେ ସେ ଏପରି ଝାଡ଼ି-ହେଲେ । ତାପରେ ସେ ଆନନ୍ଦିତ ମନରେ ଜ୍ୱଳନ୍ତ ଅଗ୍ନି ମଧ୍ୟରେ ଝାସଦେଲେ । ମନେ ହେଲା, ସତେ ଅବା ଗୋଟିଏ ରାଜହଂସ

ଉଲ୍ଲାସରେ ଆକାଶରୁ ଡ଼େଇଁଆସି ପଦ୍ମବନ ଉପରେ ଓହ୍ଲାଇପଡ଼ିଲ; କିନ୍ତୁ ଆଶ୍ଚର୍ଯ୍ୟର କଥା ସେହି ଅଗ୍ନି ତାଙ୍କୁ ତୁଷାର ପରି ଶୀତଳ ବୋଧ ହେଲା । ତାଙ୍କର ଗୋଟିଏ ସୁଦ୍ଧା ଲୋମ ଦଗ୍ଧ ହେଲା ନାହିଁ । ବୋଧିସତ୍ତ୍ୱ ବିସ୍ମିତ ହୋଇ କହିଲେ, "ଏ କଅଣ ? ମୋର ଶରୀର ଯେ ଦଗ୍ଧ ହେଉ ନାହିଁ ।"

ଶକ୍ର ଉତ୍ତର କଲେ, "ହେ ଧର୍ମାତ୍ମା ! ମୁଁ ବ୍ରାହ୍ମଣ ନୁହେଁ । ମୁଁ ହେଉଛି ଶକ୍ର । ତୁମର ଧର୍ମ ପରୀକ୍ଷା କରିବା ପାଇଁ ବ୍ରାହ୍ମଣରୂପ ଧରି ଆସିଥିଲି ।"

ବୋଧିସତ୍ତ୍ୱ କହିଲେ, "ହେ ଶକ୍ର, କେବଳ ଆପଣ କାହିଁକି ଜଗତର ସମସ୍ତେ ମୋତେ ପରୀକ୍ଷା କଲେ ମଧ୍ୟ ଦେଖିବେ ଯେ ମୁଁ ଯେଉଁ ଦାନ ଦେବାକୁ ବସିଛି, ମୋର ସେଥିରେ ଲବମାତ୍ର କୁଣ୍ଠା ନାହିଁ ।"

ଶକ୍ର କହିଲେ, "ହେ ମହାତ୍ମା ! ତୁମର ଏହି ମହାନ୍ ଦାନ ଜଗତ୍‌ବାସୀ ଜାଣିରଖନ୍ତୁ ।" ଏହା କହି ସେ ପର୍ବତକୁ ଚିପିଦେବାରୁ ସେଥିରୁ ରସ ବାହାରିଲା । ଶକ୍ର ସେହି ରସକୁ ନେଇ ଚନ୍ଦ୍ରଙ୍କ ଦେହରେ ଶଶକର ମୂର୍ତ୍ତି ଅଙ୍କନ କରିଦେଲେ ।"

ବୋଧିସତ୍ତ୍ୱଙ୍କଠାରୁ ବିଦାୟ ନେଇ ଶକ୍ର ସ୍ୱର୍ଗରାଜ୍ୟକୁ ଫେରି-ଆସିଲେ । ଚାରିଟିଯାକ ପ୍ରାଣୀ ବନ ମଧ୍ୟରେ ଧର୍ମାଚରଣ କରି ସୁଖରେ ଜୀବନ ଅତିବାହିତ କରିବାକୁ ଲାଗିଲେ । ...

Digitized by srujanika@gmail.com

# ମହାଶୀଳଭ ଜାତକ

ଥରେ ବୋଧିସତ୍ତ୍ୱ ବାରଣସୀର ରଜା ବ୍ରହ୍ମଦତ୍ତଙ୍କର ପୁତ୍ରରୂପେ ଜନ୍ମିଥିଲେ । ଯଥାସମୟରେ ତାଙ୍କର ବିଦ୍ୟାରମ୍ଭ ହେଲା ଓ ଷୋଳବର୍ଷ ବୟସ ହେଲାବେଳକୁ ସେ ନାନାବିଦ୍ୟାରେ ପ୍ରବୀଣ ହୋଇଗଲେ । ପିତାଙ୍କ ଅନ୍ତେ ସେ ସିଂହାସନାରୋହଣ କରି ମହାଶୀଳଭ ନାମରେ ପରିଚିତ ହେଲେ । ନ୍ୟାୟ ଓ ଧର୍ମ ତାଙ୍କ ଶାସନର ପ୍ରଧାନ ମନ୍ତ୍ର ଥିଲା । ସେ ନଗରେ ମଧ୍ୟରେ ଛଅଟି ଦାନଶାଳା ପ୍ରତିଷ୍ଠା କରିଥିଲେ । ସେଥିମଧ୍ୟରୁ ନଗରର ଚାରିଦ୍ୱାରରେ ଗୋଟିଏ ଲେଖାଏଁ, ନଗରେ ମଧ୍ୟସ୍ଥଳରେ ଗୋଟିଏ ଏବଂ ଅନ୍ୟଟି ରାଜ-ପ୍ରାସାଦର ଦ୍ୱାରଦେଶରେ ଥିଲା । ପଥିକ ଓ ଦରିଦ୍ରମାନଙ୍କୁ ରଜା ଏହି ଦାନଶାଳାମାନଙ୍କରେ ଦାନ ଦେଉଥିଲେ । ସେ ଧର୍ମମନ୍ତ୍ରମାନ ପାଳନ କରି ରାଜ୍ୟ ଶାସନ କରୁଥିଲେ ଓ ବିଧି ଅନୁସାରେ ଉପବାସ କରୁଥିଲେ । ତାଙ୍କର ଅସୀମ ଧୈର୍ଯ୍ୟ ଥିଲା ଓ ସେ ଦୟା ପ୍ରଦର୍ଶନରେ ଅଦ୍ୱିତୀୟ ଥିଲେ । ଯଥାର୍ଥରେ ସେ ପ୍ରଜାମାନଙ୍କୁ ପୁତ୍ରବତ୍ ପାଳନ କରୁଥିଲେ । ଇତର ପ୍ରାଣୀମାନେ ମଧ୍ୟ ତାଙ୍କର ଦୟାରୁ ବଞ୍ଚିତ ନ ଥିଲେ ।

ଥରେ ତାଙ୍କର ଜଣେ ମନ୍ତ୍ରୀ କୌଣସି ଅନ୍ୟାୟ କାର୍ଯ୍ୟ କରିଥିବାର ଶୁଣାଗଲା । ଏହି ବିଷୟ ରଜାଙ୍କର କର୍ଣ୍ଣଗୋଚର ହେବାରୁ ସେ ଅନୁସନ୍ଧାନ କରି ବୁଝିଲେ ଯେ ଘଟଣାଟି ସତ୍ୟ । ତେଣୁ ରଜା ଉକ୍ତ ମନ୍ତ୍ରୀଙ୍କୁ ଡାକି କହିଲେ, "ତୁମେ ଅନ୍ଧଭାବରେ ପାପକାର୍ଯ୍ୟ କରିବାକୁ କୁଣ୍ଠିତ ହୋଇନାହଁ । ତୁମେ ଯେ କେବଳ

Digitized by srujanika@gmail.com

ମନ୍ତ୍ରୀପଦର ଅଯୋଗ୍ୟ ତାହା ନୁହେଁ; ତୁମେ ମୋ ରାଜ୍ୟରେ ରହିବାର ଯୋଗ୍ୟ ନୁହଁ । ତେଣୁ ତୁମର ଧନସମ୍ପତ୍ତି ଓ ପତ୍ନୀ ପ୍ରଭୃତି ପୋଷ୍ୟବର୍ଗଙ୍କୁ ନେଇ ମୋ ରାଜ୍ୟରୁ ବାହାରିଯାଅ ।'' ଏହିପରି କାଶୀରାଜଙ୍କଦ୍ୱାରା ବିତାଡ଼ିତ ହୋଇ ମନ୍ତ୍ରୀ ପରିବାର ସହିତ କୋଶଳ ରାଜ୍ୟକୁ ଚାଲିଯାଇ ସେଠାରେ ବାସ କରିବାକୁ ଲାଗିଲେ ।

ସେ କୋଶଳ ରାଜାଙ୍କ ନିକଟରେ କାର୍ଯ୍ୟ କରି କ୍ରମେ ତାଙ୍କର ବିଶ୍ୱାସଭାଜନ ହୋଇଗଲେ ଓ ରାଜ୍ୟରେ ଜଣେ ପ୍ରତିପତ୍ତିଶାଳୀ ଲୋକରୂପେ ପରିଚିତ ହେଲେ । ରାଜା ଗୁରୁତର ବ୍ୟାପାରମାନଙ୍କରେ ତାଙ୍କର ପରାମର୍ଶ ନେବାକୁ ଲାଗିଲେ । ଦିନେ ସେ ରାଜାଙ୍କୁ ଗୋପନରେ କହିଲେ, "ମହାରାଜ ! କାଶୀ ରାଜ୍ୟ ଧନସମ୍ପଦରେ ପରିପୂର୍ଣ୍ଣ । ଏହାର ରାଜା ଅତ୍ୟନ୍ତ ଦୁର୍ବଳ । ସାମାନ୍ୟ ଆକ୍ରମଣରେ କାଶୀ ରାଜ୍ୟ ଆପଣଙ୍କର ହସ୍ତଗତ ହୋଇପାରିବ ।"

କୋଶଳରାଜ ଜାଣିଥିଲେ ଯେ କାଶୀ ରାଜ୍ୟ ବୃହତ୍ ଓ ଧନଶାଳୀ । ଏତେ ସହଜରେ ଯେ କାଶୀ ରାଜ୍ୟ ଅଧିକୃତ ହୋଇ-ପାରିବ, ତାହା ସେ ବିଶ୍ୱାସ କରିପାରିଲେ ନାହିଁ । ତାଙ୍କର ଆଶଙ୍କା ହେଲା, ଏହି ଲୋକଟି ଶତ୍ରୁପକ୍ଷରୁ ନିଯୁକ୍ତ ହୋଇଅଛି ଓ ତାଙ୍କୁ ବିପଦରେ ପକାଇବା ତାହାର ଉଦ୍ଦେଶ୍ୟ । ସେ ଏହା ସ୍ପଷ୍ଟଭାବରେ ଜଣାଇଦେଲେ ।

ଉକ୍ତ ବିତାଡ଼ିତ ମନ୍ତ୍ରୀ କହିଲେ, "ମହାରାଜ ! ବିଶ୍ୱାସ କରନ୍ତୁ, ମୋର କଥା ଅକ୍ଷରେ ଅକ୍ଷରେ ସତ୍ୟ । ମୁଁ ଶତ୍ରୁପକ୍ଷରୁ ଚରବୃତ୍ତି କରୁନାହିଁ । ଆପଣ ମୋ କଥାର ସତ୍ୟତା ପରୀକ୍ଷା କରି ଦେଖିପାରନ୍ତି । ଆପଣ କେତେଜଣ ଲୋକ ପଠାଇ କାଶୀ ରାଜ୍ୟର

Digitized by srujanika@gmail.com

କୌଣସି ସୀମାନ୍ତ ଗ୍ରାମରେ ଲୁଣ୍ଠନ ଓ ହତ୍ୟା କରନ୍ତୁ । ଦେଖିବେ, ସେ ଏତେ ଦୁର୍ବଳ ଯେ ଦୁର୍ବୃତ୍ତମାନଙ୍କୁ କଠିନ ଦଣ୍ଡ ଦେବା ପରିବର୍ତ୍ତେ ସେମାନଙ୍କୁ ଛାଡ଼ିଦେବେ । ହୁଏତ ସେମାନଙ୍କୁ କିଛି ଅର୍ଥ ମଧ୍ୟ ଦେଇପାରନ୍ତି ।”

କୋଶଳରାଜ ଭାବିଲେ, “କଥାରେ ସତ୍ୟତା ନ ଥିଲେ ସେ ଏତେ ସାହସରେ କହିପାରନ୍ତା ନାହିଁ । ଯାହାହେଉ ପରୀକ୍ଷା କରି ଦେଖାଯାଉ ।” ଏହିପରି ଚିନ୍ତା କରି ସେ କେତେଜଣ ଦୁର୍ବୃତ୍ତଙ୍କଦ୍ୱାରା କାଶୀ ରାଜ୍ୟର ଏକ ସୀମାନ୍ତ ଗ୍ରାମରେ ନରହତ୍ୟା ଓ ଲୁଣ୍ଠନ ଚଳାଇଲେ ।

କାଶୀର ରାଜକର୍ମଚାରୀମାନେ ଦୁର୍ବୃତ୍ତମାନଙ୍କୁ ଧରି ନେଇ ରାଜା ମହାଶୀଳବଙ୍କ ସମ୍ମୁଖରେ ଉପସ୍ଥାପିତ କରି ସେମାନଙ୍କର ଅପରାଧ ଜଣାଇଦେଲେ । ରାଜା ସେମାନଙ୍କୁ ପଚାରିଲେ, “ତୁମେମାନେ ମୋର ଏହି ଗ୍ରାମବାସୀଙ୍କ ଉପରେ ଅତ୍ୟାଚାର କରୁଛ କାହିଁକି ?”

ସେମାନେ ଉତ୍ତର କଲେ, “ଆମେମାନେ ଅର୍ଥ ଉପାର୍ଜନର ଅନ୍ୟ ପନ୍ଥା ନ ଦେଖି ଏପରି କାର୍ଯ୍ୟ କରୁଅଛୁ ।”

ରାଜା କହିଲେ, “ତୁମର ଅର୍ଥାଭାବ ହେଲେ ମୋର ଦାନଶାଳାକୁ ଆସି ଦାନ ନେଇଥାନ୍ତ । ନରହତ୍ୟା, ଲୁଣ୍ଠନ ଏସବୁ ପାପକାର୍ଯ୍ୟ । ମୁଁ ତୁମକୁ କିଛି କିଛି ଧନ ଦେଉଅଛି । ଯାଅ, ଏଣିକି ଆଉ ଏପରି ଅନ୍ୟାୟ କରିବ ନାହିଁ । ଅଭାବ ହେଲେ ମୋତେ ଜଣାଇବ ।”

କାଶୀରାଜ ସେମାନଙ୍କୁ ଅର୍ଥ ଦେଇ ବିଦାୟ କରିଦେଲେ; କିନ୍ତୁ ଏହାଦ୍ୱାରା କୋଶଳରାଜାଙ୍କର ସନ୍ଦେହ ଦୂର ହେଲନାହିଁ । ସେ ଆଉ ଦଳେ ଲୋକଙ୍କୁ ସେହି ଉଦ୍ଦେଶ୍ୟରେ କାଶୀ ରାଜ୍ୟ ଭିତରକୁ

Digitized by srujanika@gmail.com

ପଠାଇଲେ । ସେମାନେ ନରହତ୍ୟା ଇତ୍ୟାଦି ଅପରାଧ କଲେ; କିନ୍ତୁ ଏଥର ମଧ୍ୟ କାଶୀରାଜ ଅପରାଧୀମାନଙ୍କୁ ଦଣ୍ଡ ନ ଦେଇ କିଛି ଧନ ଓ ଉପଦେଶ ଦେଇ ବିଦାୟ କରିଦେଲେ ।

କୋଶଳରାଜ ଏଥର ମଧ୍ୟ କାଶୀରାଜାଙ୍କ ଦୁର୍ବଳତା ବିଷୟରେ ନିଃସନ୍ଦେହ ହୋଇ ପାରିଲେ ନାହିଁ । ସେ ଆଉ ଥରେ ପରୀକ୍ଷା କରିବା ପାଇଁ ଦଳେ ଦୁର୍ବୃତ୍ତଙ୍କୁ କାଶୀର ରାଜଧାନୀ ବାରାଣସୀକୁ ପଠାଇ-ଦେଲେ । ସେମାନେ ନଗରୀରେ ଅତ୍ୟାଚାର କରିବାକୁ ଲାଗିଲେ । ଅପରାଧୀମାନେ ରାଜକର୍ମଚାରୀଙ୍କ ଦ୍ୱାରା ଧୃତହୋଇ ବିଚାର ନିମନ୍ତେ ରାଜାଙ୍କ ନିକଟକୁ ନିଆଗଲେ । ଏମାନେ ମଧ୍ୟ ପୂର୍ବପରି ଅର୍ଥ ସହ ମୁକ୍ତି ଲାଭକଲେ ।

ଏବେ କୋଶଳରାଜଙ୍କର ଦୃଢ଼ ବିଶ୍ୱାସ ଜନ୍ମିଲା ଯେ କାଶୀ-ରାଜ ପ୍ରକୃତରେ ଦୁର୍ବଳ ଏବଂ ତାଙ୍କ ରାଜ୍ୟ ଆକ୍ରମଣ କରି ଅଧିକାର କରିବା ଦୁରୂହ ବ୍ୟାପାର ନୁହେଁ । ସେ ଗୋଟିଏ ସୈନ୍ୟଦଳ ଓ ଓ ହସ୍ତୀସହ କାଶୀ ରାଜ୍ୟ ଆକ୍ରମଣ କରିବାକୁ ବାହାରିଲେ ।

କାଶୀରାଜାଙ୍କର ଏକ ସହସ୍ରବିଶିଷ୍ଟ ସୈନ୍ୟଦଳ ଥିଲେ । ସେମାନେ ଏପରି ପରାକ୍ରାନ୍ତ ଥିଲେ ଯେ ଇନ୍ଦ୍ରଙ୍କର ବଜ୍ର ସମ୍ମୁଖରେ ମଧ୍ୟ ସେମାନେ ପଛଘୁଞ୍ଚା ଦେବାର ଲୋକ ନ ଥିଲେ । ସେମାନେ ଇଚ୍ଛାକଲେ ସମଗ୍ର ଭାରତକୁ ମଧ୍ୟ ପଦାନତ କରି ପାରନ୍ତେ । କୋଶଳରାଜ କାଶୀ ଆକ୍ରମଣ କରିବାକୁ ସୀମାନ୍ତରେ ଉପସ୍ଥିତ ହୋଇଥିବା ସମ୍ବାଦ ଶୁଣିପାରି ସେମାନେ ଆସି ରାଜାଙ୍କୁ ଜଣାଇଲେ, "ମହାରାଜ ! ଆଦେଶ ଦିଅନ୍ତୁ; ଆମେମାନେ ଆକ୍ରମଣକାରୀ ସୈନ୍ୟ-ମାନଙ୍କୁ ବିତାଡ଼ିତ କରି କୋଶଳରାଜାଙ୍କୁ ବନ୍ଦୀ କରି ନେଇ ଆସିବୁ ।"

Digitized by srujanika@gmail.com

ରାଜା କହିଲେ, "ନା, ନା, ତାହା କର ନାହିଁ । ମୋ ଯୋଗୁ କେହି କଷ୍ଟ ଭୋଗ କରୁ, ଏହା ମୋର ଇଚ୍ଛା ନୁହେଁ । ଯଦି କେହି ମୋର ରାଜ୍ୟ ନେବାକୁ ଚାହେଁ, ସେ ନେଉ । କିନ୍ତୁ ତାହାର ବିରୁଦ୍ଧରେ ଅସ୍ତ୍ର ଧାରଣ କରିବାକୁ ମୁଁ ଅନୁମତି ଦେଇପାରିବି ନାହିଁ ।"

କୋଶଳରାଜ ସୈନ୍ୟସାମନ୍ତ ସହ କାଶୀ ରାଜ୍ୟର ମଧ୍ୟଭାଗରେ ପ୍ରବେଶ କଲେ । ମନ୍ତ୍ରୀ ଓ ସେନାପତିମାନେ ପୁଣି ରାଜାଙ୍କୁ ପ୍ରାର୍ଥନା କଲେ, "ମହାରାଜ ! ଆପଣଙ୍କ ଆଦେଶ ପାଇଲେ ଶତ୍ରୁକୁ ରାଜ୍ୟରୁ ବିତାଡ଼ିତ କରିଦେବୁ ।" କିନ୍ତୁ କାଶୀରାଜ ପୂର୍ବପରି ଉତ୍ତର ଦେଇ ସେମାନଙ୍କୁ ପ୍ରତିଆକ୍ରମଣରୁ ନିବୃତ୍ତ କଲେ । ଶେଷରେ ଶତ୍ରୁସୈନ୍ୟ ନଗରର ଦ୍ୱାରଦେଶରେ ଉପସ୍ଥିତ ହେଲେ । କୋଶଳରାଜ ଦୂତ ଦ୍ୱାରା ଜଣାଇଦେଲେ, "ମୋ ହସ୍ତରେ କାଶୀ ରାଜ୍ୟ ସମର୍ପଣ କର; ନଚେତ୍ ଯୁଦ୍ଧ କର ।" କାଶୀରାଜ ଉତ୍ତର ଦେଲେ, "ଯୁଦ୍ଧ କରିବା ମୋର ମତି ନୁହେଁ । ତୁମେ ଇଚ୍ଛା କଲେ ମୋର ରାଜ୍ୟକୁ ନେଇପାର ।"

ମନ୍ତ୍ରୀମାନେ ଶେଷ ଚେଷ୍ଟା କରି ରାଜାଙ୍କୁ ନିବେଦନ କଲେ, "ଶତ୍ରୁ ନଗରରେ ପ୍ରବେଶ କରିବାକୁ ଉଦ୍ୟତ । ଆମେମାନେ ଯୁଦ୍ଧ କରି ଶତ୍ରୁକୁ ବିତାଡ଼ିତ କରିଦେବାକୁ ପ୍ରସ୍ତୁତ; କେବଳ ଆପଣଙ୍କର ଆଦେଶକୁ ଅପେକ୍ଷା କରି ରହିଛୁ ।" କିନ୍ତୁ ରାଜା ଆଦେଶ ଦେଲେ, "ମୋର ଜଣେ ହେଲେ ସୈନ୍ୟ ଯୁଦ୍ଧ କରିବାକୁ ଯିବ ନାହିଁ । ଶତ୍ରୁ ନଗରେ ଅଧିକାର କରିବାକୁ ଆସୁଛି । ନଗରର ଦ୍ୱାର ଖୋଲିଦିଅ ।" ଏହି ଆଦେଶ ଦେଇ ସେ ଶତ ଶତ ମନ୍ତ୍ରୀ ଓ ଉଚ୍ଚ

Digitized by srujanika@gmail.com

ରାଜକର୍ମଚାରୀଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ସିଂହାସନ ଉପରେ ବସିରହିଲେ ।

କୋଶଳରାଜ ସସୈନ୍ୟ ନଗର ମଧ୍ୟରେ ପ୍ରବେଶ କଲେ । କେହି ଜଣେ ହେଲେ ପ୍ରତିରୋଧ ବା ପ୍ରତିବାଦ କଲେ ନାହିଁ । ତତ୍ପରେ ସେ ରାଜପୁରୀରେ ପ୍ରବେଶ କଲେ । ତାଙ୍କ ଆସିବା ପୂର୍ବରୁ ସମସ୍ତ ଦ୍ୱାର ଉନ୍ମୁକ୍ତ ରଖାଯାଇଥିଲା; ତେଣୁ ପ୍ରବେଶ କରିବାରେ ତାଙ୍କର ତିଳେମାତ୍ର ଅସୁବିଧା ହେଲା ନାହିଁ । ସେ ସଙ୍ଗେ ସଙ୍ଗେ ନିଜର ସୈନ୍ୟମାନଙ୍କୁ ଆଦେଶ ଦେଲେ, "ଏ ରାଜା, ତାର ମନ୍ତ୍ରୀ ଓ କର୍ମଚାରୀମାନଙ୍କର ହାତକୁ ପଛପଟେ ବାନ୍ଧି ଶ୍ମଶାନକୁ ନେଇ-ଯାଅ । ସେଠାରେ ପ୍ରତ୍ୟେକଙ୍କ ପାଇଁ ଗୋଟିଏ ଲେଖାଏଁ ଗର୍ତ୍ତ ଖୋଳି ସେମାନଙ୍କୁ ବେକ ପର୍ଯ୍ୟନ୍ତ ପୋତିଦିଅ । ରାତିରେ ଶୃଗାଳ-ମାନେ ଆସି ସେମାନଙ୍କୁ ଜୀବନ୍ତ ଅବସ୍ଥାରେ ଭକ୍ଷଣ କରିବେ ।"

କୋଶଳ ରାଜାଙ୍କର ଏହି ନିଷ୍ଠୁର ଆଦେଶ ଅବିଳମ୍ବେ କାର୍ଯ୍ୟରେ ପରିଣତ ହେଲା । ଏପରି ହୀନ ଅବସ୍ଥାରେ ପଡ଼ି ମଧ୍ୟ କାଶୀରାଜ ତାଙ୍କ ପ୍ରତି ମନରେ, ବାକ୍ୟରେ ବା କାର୍ଯ୍ୟରେ ଆଦୌ ବିଦ୍ୱେଷ ଦେଖାଇଲେ ନାହିଁ । ତାଙ୍କର ଚିର ଅନୁଗତ କର୍ମଚାରୀ-ମାନେ ମଧ୍ୟ ରାଜାଙ୍କ ସହିତ ସମସ୍ତ ଲାଞ୍ଛନା ଅମ୍ଳାନ ବଦନରେ ସହ୍ୟ କଲେ ।

ରାଜା ଓ ତାଙ୍କର କର୍ମଚାରୀମାନଙ୍କୁ ଶ୍ମଶାନକୁ ନିଆଯାଇ ବେକ ପର୍ଯ୍ୟନ୍ତ ପୋତିଦିଆଗଲା । ଏପରି ନିଃସହାୟ ଅବସ୍ଥାରେ ଥାଇ ମଧ୍ୟ ରାଜା ମହାଶୀଳଭ ନିଜର ଲୋକମାନଙ୍କୁ କହୁଥିଲେ, "ଭାଇମାନେ, କାହାରି ପ୍ରତି ମନରେ ସୁଦ୍ଧା ହିଂସା ବା କ୍ରୋଧକୁ ସ୍ଥାନ ଦିଅ ନାହିଁ ।"

Digitized by srujanika@gmail.com

ଅର୍ଦ୍ଧରାତ୍ର ବେଳକୁ ଶୃଗାଳମାନେ ଶ୍ମଶାନକୁ ଆସିଲେ; କିନ୍ତୁ ରାଜା ଓ ତାଙ୍କ ଲୋକେ ଚିତ୍କାର କରିବାରୁ ସେମାନେ ଭୟରେ କିଛି ଦୂର ଅପସରିଗଲେ । ସେମାନେ କିଛି ସମୟ ପରେ ପୁଣି ଆକ୍ରମଣ କରିବାକୁ ଆସିଲେ ଓ ଚିତ୍କାର ଶୁଣି ଫେରିଗଲେ । ସେମାନେ ଲକ୍ଷ୍ୟ କଲେ ଯେ ଲୋକମାନେ ଚିତ୍କାର କରୁଥିଲେ ହେଁ କେହି ସେମାନଙ୍କୁ ତଡ଼ିଦେବାକୁ ଆସୁନାହାନ୍ତି । ତେଣୁ ସେମାନେ ସ୍ଥିର କଲେ ଯେ ଏହି ଲୋକମାନଙ୍କୁ ମରିବା ପାଇଁ ବାନ୍ଧି ରଖାଯାଇଛି । ସେମାନେ ତୃତୀୟ ଥର ମାଡ଼ି ଆସିଲେ; କିନ୍ତୁ ଲୋକେ ଚିତ୍କାର କଲେ ସୁଦ୍ଧା ସେମାନେ ପଳାଇଗଲେ ନାହିଁ । ଶୃଗାଳମାନଙ୍କର ଦଳପତି ରାଜାଙ୍କୁ ଓ ଅନ୍ୟମାନେ ତାଙ୍କର ଜଣେ ଜଣେ କର୍ମଚାରୀଙ୍କୁ ଖାଇବାକୁ ଉଦ୍ୟତ ହେଲେ । ରାଜା ଦେଖିଲେ, ଶୃଗାଳମାନଙ୍କର ଦଳପତି ତାଙ୍କୁ ଖାଇବାକୁ ମୁହଁ ମେଲି କରି ଆସୁଛି । ସେ ହଠାତ୍ ତାର ଗଳାକୁ କାମୁଡ଼ି ଧରିଲେ । ଯେତେ ଚେଷ୍ଟା କଲେ ସୁଦ୍ଧା ସେ ରାଜାଙ୍କ ମୁହଁରୁ ନିଜକୁ ମୁକ୍ତ କରି ନପାରି ବିକଳରେ ରଡ଼ିବାକୁ ଲାଗିଲା । ଦଳପତିର ଏହି ରଡ଼ିରୁ ଅନ୍ୟ ଶୃଗାଳମାନେ ମନେ କଲେ ଯେ କେହି ଜଣେ ଦଳପତିକୁ ଧରିଛି । ସେମାନେ ଭୟରେ ନିଜ ନିଜ ଜୀବନ ନେଇ ପଳାଇଲେ ।

ଏଣେ ଦଳପତି ରାଜାଙ୍କ ମୁଖରୁ ମୁକ୍ତି ପାଇବା ପାଇଁ ଛଟପଟ ହେବା ଫଳରେ ପୋତା ହୋଇଥିବା ମାଟିର କେତେକ ଅଂଶ ଖୋଲିହୋଇଗଲା । ରାଜା ଦଳପତିକୁ ଛାଡ଼ିଦେବାମାତ୍ରେ ସେ ପଳାଇଗଲା । ସେତେବେଳକୁ ଶ୍ମଶାନରେ ଆଉ ଗୋଟିଏ ସୁଦ୍ଧା ଶୃଗାଳ ନଥିଲା । ରାଜା ବହୁ ଚେଷ୍ଟା କରି ହାତ ଦୁଇଟିକୁ ଗାତରୁ ବାହାର କଲେ । ଏଣିକି ହାତ ସାହାଯ୍ୟରେ ଗାତରୁ ବାହାରିବା

Digitized by srujanika@gmail.com

ତାଙ୍କ ପକ୍ଷରେ ସହଜ ହେଲା । ନିଜକୁ ମୁକ୍ତ କଲା ପରେ ସେ ଅନ୍ୟମାନଙ୍କୁ ଉତ୍ସାହ ଦେଇ ସେମାନଙ୍କୁ ଗାତରୁ ବାହାର କରିବାରେ ଲାଗିଲେ । ପରସ୍ପରକୁ ସାହାଯ୍ୟ କରି ସେମାନେ ସମସ୍ତେ ଗାତରୁ ବାହାରିପାରିଲେ ।

ଦୈବାତ୍ ଏହି ସମୟରେ ଗୋଟିଏ ମୃତ ଦେହ ପାଇଁ ଦୁଇଟି ପ୍ରେତପୁରୁଷ ମଧ୍ୟରେ କଳହ ଉପସ୍ଥିତ ହୋଇଥିଲା । ପ୍ରତ୍ୟେକେ ଶବଟିକୁ ଖାଇବା ପାଇଁ ଦାବି କରୁଥିଲେ । ସେ ଦୁହେଁ ନ୍ୟାୟବିଚାର ପାଇଁ ରାଜାଙ୍କୁ ପ୍ରାର୍ଥନା କଲେ । ରାଜା କହିଲେ, "ମୁଁ ତୁମ ଦୁହିଁଙ୍କର କଳହ ମୀମାଂସା କରିଦେବି; କିନ୍ତୁ ବିଚାର କରିବା ପୂର୍ବରୁ ମୁଁ ସ୍ନାନ କରି ନବବସ୍ତ୍ର ପରିଧାନ କରି ଶୁଦ୍ଧ ହେବା ଆବଶ୍ୟକ ।"

ସେତେବେଳକୁ କୋଶଳରାଜାଙ୍କର କାଶୀ ରାଜ୍ୟରେ ଅଭିଷେକ ହେବା ପାଇଁ ସବୁ ଉପକରଣ ପ୍ରସ୍ତୁତ ଥିଲା । ପ୍ରେତପୁରୁଷ ଦୁହେଁ ସେସବୁ ନେଇଆସି ରାଜାଙ୍କୁ ଦେଲେ । ପବିତ୍ର ତୀର୍ଥଜଳରେ ରାଜା ସ୍ନାନ କଲେ । ସେ ମହାର୍ଘ ବସ୍ତ୍ର ପରିଧାନ କରି ଗନ୍ଧମାଲ୍ୟ ପ୍ରଭୃତି ଗ୍ରହଣ କଲେ । କୋଶଳରାଜାଙ୍କ ପାଇଁ ପ୍ରସ୍ତୁତ ଥିବା ଖାଦ୍ୟକୁ ସେ ଦୁହେଁ ଆଣି ରାଜାଙ୍କୁ ଖାଇବାକୁ ଦେଲେ । ଭୋଜନ ପରେ ରାଜା ସେମାନଙ୍କୁ ଆଦେଶ ଦେଲେ, "ବର୍ତ୍ତମାନ ରାଜପୁରୀରେ କୋଶଳରାଜାଙ୍କ ପାଖରେ ଥିବା ଖଣ୍ଡାଟି ଆଣି ମୋତେ ଦିଅ ।" ମୁହୂର୍ତ୍ତକ ମଧ୍ୟରେ ପ୍ରେତପୁରୁଷମାନେ ଖଣ୍ଡା ଆଣିଦେଲେ । ରାଜା ଶବଟିକୁ ଠିକ୍ ମଧ୍ୟସ୍ଥଳରୁ ଆପାଦମସ୍ତକ ଚିରି ସମାନ ଦୁଇଭାଗ କରିଦେଲେ ଓ ପ୍ରତ୍ୟେକଙ୍କୁ ଗୋଟିଏ ଲେଖାଏଁ ଭାଗ ଦେଲେ । ସେମାନେ ନିଜ ନିଜର ଭାଗ ଖାଇ ସନ୍ତୁଷ୍ଟ ହୋଇ କହିଲେ, "ଆପଣଙ୍କ ପାଇଁ ଆମେ କଅଣ କରିବୁ କହନ୍ତୁ ।" ରାଜା କହିଲେ, "ତୁମମାନଙ୍କର

Digitized by srujanika@gmail.com

ଅଦ୍ଭୁତ ଶକ୍ତିବଳରେ ମୋତେ ମୋର ସିଂହାସନକୁ ଓ ମୋର କର୍ମଚାରୀମାନଙ୍କୁ ନିଜ ନିଜ ସ୍ଥାନକୁ ନେଇଯାଅ ।" ମୁହୂର୍ତ୍ତକ ମଧ୍ୟରେ ସମସ୍ତେ ନିଜ ନିଜ ସ୍ଥାନରେ ଉପସ୍ଥିତ ହୋଇଗଲେ ।

କୋଶଳରାଜ ଦରବାର ଗୃହରେ ସୁଖନିଦ୍ରାରେ ଶୋଇ-ଥିଲେ । କାଶୀରାଜ ଖଣ୍ଡାର ବେଣ୍ଟରେ ତାଙ୍କୁ ହଲାଇଦେଲେ । ସେ ହଠାତ୍ ଉଠିପଡ଼ି ଦେଖିଲେ ଯେ କାଶୀରାଜ ଦଣ୍ଡାୟମାନ; ତାଙ୍କ ହସ୍ତରେ ତରବାରି । ସେ ବିସ୍ମୟରେ ଅଭିଭୂତ ହୋଇଗଲେ; କିନ୍ତୁ ସାହସ ନ ହରାଇ କହିଲେ, "ଆପଣଙ୍କୁ ଶ୍ମଶାନରେ ପୋତିଦିଆ-ଯାଇଥିଲା; ଆପଣ ମୁକ୍ତ ହେଲେ କିପରି ? ଦରବାର ଗୃହର ଦ୍ୱାର ରୁଦ୍ଧ ଥିଲା ଓ ପ୍ରହରୀମାନେ ଦ୍ୱାରଦେଶରେ ଜଗିଥିଲେ । ଆପଣ ଏଠାରେ ପ୍ରବେଶ କଲେ କିପରି ?"

କାଶୀରାଜ ସମସ୍ତ ଘଟଣା ବିଶଦରୂପେ ବର୍ଣ୍ଣନା କରିଗଲେ । କୋଶଳରାଜଙ୍କ ହୃଦୟର ପରିବର୍ତ୍ତନ ହୋଇଗଲା । ସେ କହିଲେ, "ମହାରାଜ ! ମୁଁ ଆପଣଙ୍କର ଉଦାରତା ଓ ମହତ୍ତ୍ୱ କଳନା କରି ପାରିନଥିଲି । ମୁଁ ମନୁଷ୍ୟ ହେଲେହେଁ ସେ ପ୍ରେତପୁରୁଷଙ୍କଠାରୁ ହୀନ । ଆପଣଙ୍କର ରାଜ୍ୟ ଅପହରଣ କରିବାକୁ ଚେଷ୍ଟା କରି ମୁଁ ଘୋର ପାପ ଅର୍ଜିଅଛି; ମୋତେ କ୍ଷମା ଦିଅନ୍ତୁ । ଆପଣ ହିଁ ଏ ସିଂହାସନର ଯୋଗ୍ୟ ।" ଏହା କହି ସେ କାଶୀରାଜଙ୍କୁ ସିଂହାସନ ଛାଡ଼ିଦେଇ ନିଜେ ତଳେ ବସିଲେ ।

ପରଦିନ ପ୍ରଭାତରେ କୋଶଳରାଜ ନିଜର ସୈନ୍ୟସାମନ୍ତଙ୍କୁ ଏକତ୍ର କରି ଜଣାଇଦେଲେ ଯେ ସେମାନଙ୍କୁ ନିଜ ରାଜ୍ୟକୁ

Digitized by srujanika@gmail.com

ଫେଡ଼େଇବାକୁ ହେବ । କାଶୀରାଜଙ୍କ ପରି ଉଦାର ଓ ମହତ୍ ରାଜା ଜଗତରେ ବିରଳ । ସର୍ବସମକ୍ଷରେ ସେ କାଶୀରାଜଙ୍କଠାରୁ କ୍ଷମା ପ୍ରାର୍ଥନା କରି ତାଙ୍କ ସହିତ ବନ୍ଧୁତା-ସୂତ୍ରରେ ଆବଦ୍ଧ ହୋଇଲେ । ...

## ନଳପାନ ଜାତକ

ପୂର୍ବକାଳରେ କୌଣସି ଅରଣ୍ୟ ମଧ୍ୟରେ ଗୋଟିଏ ପୁଷ୍କରଣୀ ଥିଲା । ଏହି ପୁଷ୍କରିଣୀରେ ଏକ ଭୀଷଣ ରାକ୍ଷସ ବାସ କରୁଥିଲା । ଯେକୌଣସି ପ୍ରାଣୀ ଏହି ପୁଷ୍କରଣୀର ଜଳରେ ପ୍ରବେଶ କଲେ ସେ ତାହାକୁ ଭକ୍ଷଣ କରୁଥିଲା ।

ଏହି ସମୟରେ ବୋଧିସତ୍ତ୍ୱ ଏକ ବାନରରୂପେ ଜନ୍ମି ଅଶୀ ସହସ୍ର ବାନରଙ୍କର ଦଳପତି ହୋଇଥିଲେ । ସେ ନିଜର ଦଳ ନେଇ ଉକ୍ତ ବନରେ ବାସ କରୁଥିଲେ । ଦଳର ବାନରମାନେ ତାଙ୍କର ଅନୁଗତ ଥିଲେ ଓ ତାଙ୍କର ଆଦେଶ ପାଳନରେ କେବେ ହେଳା କରୁ ନଥିଲେ । ଦିନେ ସେ ଦଳର ସମସ୍ତଙ୍କୁ ଡାକି ଉପଦେଶ ଦେଲେ, "ତୁମେମାନେ ବନରେ ବୁଲି ଫଳମୂଳ ଖାଉଛ; ନଦୀ ବା ପୁଷ୍କରିଣୀର ଜଳ ପିଉଛ; କିନ୍ତୁ ମନେ ରଖିଥାଅ ଯେ କେତେକ ଫଳମୂଳରେ ବିଷ ଥାଏ, ତାକୁ ଖାଇଲେ ପ୍ରାଣ ରହିବ

Digitized by srujanika@gmail.com

ନାହିଁ । ସେହିପରି କେତେକ ଜଳାଶୟରେ କୁମ୍ଭୀର ପ୍ରଭୃତି ହିଂସ୍ର ଜୀବ ରହିଥାନ୍ତି । ସେଥିରେ ପ୍ରବେଶ କଲେ ସେମାନେ ପ୍ରାଣୀମାନଙ୍କୁ ବଧ କରି ଖାଆନ୍ତି । ତେଣୁ ତୁମେମାନେ କୌଣସି ଅଚିହ୍ନା ଫଳମୂଳ ଦେଖିଲେ ତାକୁ ହଠାତ୍ ଖାଇଦେବ ନାହିଁ; ମୋତେ ଦେଖାଇବ । ମୁଁ ତାକୁ ପରୀକ୍ଷା କରି ଦେଖିବି । ବିଷାକ୍ତ ହୋଇ ନ ଥିଲେ ମୁଁ ଖାଇବାକୁ କହିବି । ମୁଁ ମନା କଲେ ଖାଇବ ନାହିଁ । ସେହିପରି ତୃଷାର୍ତ୍ତ ହୋଇଥିଲେ ସୁଦ୍ଧା ଅପରିଚିତ ଜଳାଶୟରେ ହଠାତ୍ ପଶି ଜଳପାନ କରିବ ନାହିଁ । ମୋତେ ଆଗେ ଜଳାଶୟଟି ଦେଖାଇବ । ମୁଁ ଅନୁମତି ଦେଲେ ଜଳପାନ କରିବ; ନଚେତ୍ ତାକୁ ଛୁଇଁ ଚାଲିଯିବ ।"

ଦଳର ସମସ୍ତ ବାନର ଏକସ୍ୱରରେ କହିଲେ, "ଆପଣଙ୍କର ଏହି ଆଦେଶ ଆମେ ପାଳନ କରିବୁ, ଏଥିରେ ସନ୍ଦେହ ନାହିଁ ।"

ଦିନେ ବାନରମାନେ ବନର ଏକ ନୂତନ ଅଂଶରେ ଖାଦ୍ୟ ସଂଗ୍ରହ ପାଇଁ ବୁଲୁ ବୁଲୁ ତୃଷାର୍ତ୍ତ ହୋଇପଡ଼ିଲେ । ସେମାନେ ଜଳର ଅନ୍ୱେଷଣ କରୁ କରୁ ସେହି ପୁଷ୍କରିଣୀ ନିକଟରେ ଉପସ୍ଥିତ ହେଲେ । ଏଥିପୂର୍ବରୁ ସେମାନେ ଏହି ପୁଷ୍କରିଣୀକୁ କେବେ ଆସି ନ ଥିଲେ । ତେଣୁ ସେମାନେ ଜଳପାନ ନ କରି ପୁଷ୍କରିଣୀତଟରୁ କିଛି ଦୂରରେ ବସି ରହି ଦଳପତିଙ୍କୁ ଡାକି କହିଲେ, "ଆମେମାନେ ତୃଷାର୍ତ୍ତ ହୋଇ ଜଳପାନ କରିବାକୁ ବସିଛୁ । ଆପଣ ପୁଷ୍କରିଣୀଟିକୁ ପରୀକ୍ଷା କରି ଅନୁମତି ଦେଲେ ଜଳପାନ କରିବୁ ।"

ଦଳପତି ପୁଷ୍କରିଣୀର ଚାରିପାଖ ବୁଲି ପରୀକ୍ଷା କଲେ । ସେ ଲକ୍ଷ୍ୟ କଲେ ଯେ ନାନା ସ୍ଥାନରେ ପ୍ରାଣୀମାନଙ୍କର ଜଳରେ ପ୍ରବେଶ

Digitized by srujanika@gmail.com

କରିଥିବାର ପଦଚିହ୍ନ ରହିଛି; କିନ୍ତୁ ପୁଷ୍କରିଣୀରୁ କୌଣସି ପ୍ରାଣୀ ଫେରିଆସିବାର ପଦଚିହ୍ନ ନାହିଁ । ତେଣୁ ସେ ସ୍ଥିର କଲେ ଯେ ଏହି ପୁଷ୍କରିଣୀରେ କୌଣସି ଦୁଷ୍ଟ ରାକ୍ଷସ ଅଛି । ସେ ଜଳରେ ପ୍ରବେଶ କରିଥିବା ପ୍ରାଣୀମାନଙ୍କୁ ବଧ କରେ । ତେଣୁ ସେ ବାନରମାନଙ୍କୁ କହିଲେ, "ତୁମେମାନେ ଜଳରେ ପ୍ରବେଶ ନ କରି ମୋତେ ସମ୍ବାଦ ଦେଇ ଉତ୍ତମ କାର୍ଯ୍ୟ କରିଅଛ । ଏହି ପୁଷ୍କରିଣୀରେ ଗୋଟିଏ ରାକ୍ଷସ ଅଛି । ତୁମେମାନେ ସେଥିରେ ପ୍ରବେଶ କରିଥିଲେ ପ୍ରାଣ ହରାଇଥାନ୍ତ ।"

ରାକ୍ଷସ ଦେଖିଲା ଯେ ବାନରମାନେ ପୁଷ୍କରିଣୀରେ ପ୍ରବେଶ କରୁନାହାନ୍ତି । ତହୁଁ ସେ ବିକଟରୂପ ଧରି ଜଳରୁ ବାହାରି ଆସି କହିଲା, "ମୁଁ ଦେଖୁଛି, ତୁମେମାନେ ମୂର୍ଖ । ତୃଷାର୍ତ୍ତ ହୋଇ ଆଗରେ ନିର୍ମଳ ଜଳ ଦେଖି ମଧ୍ୟ ଜଳପାନ କରୁନାହଁ କାହିଁକି ? ଯାଅ, ଜଳପାନ କରି ତୃଷା ଦୂର କର ।"

ବୋଧିସତ୍ତ୍ୱ କହିଲେ, "ଆମେମାନେ ମୂର୍ଖ ହୋଇପାରୁ; କିନ୍ତୁ ତୁମେ ଏହି ପୁଷ୍କରିଣୀର ରାକ୍ଷସ ନୁହଁ କି ?"

ରାକ୍ଷସ କହିଲା, "ହଁ, ଏହି ପୁଷ୍କରିଣୀ ହେଉଛି ମୋର ବାସସ୍ଥାନ ।"

ବୋଧିସତ୍ତ୍ୱ ପ୍ରଶ୍ନ କଲେ, "ତୁମେ କଅଣ ଆହାର କର ?"

ରାକ୍ଷସ ଉତ୍ତର କଲା, "ଯେଉଁ ଜୀବ ଏହାର ଜଳରେ ପ୍ରବେଶ କରେ, ସେ ଛୋଟ ହେଉ ବା ବଡ଼ ହେଉ, ତାହା ମୋର ଖାଦ୍ୟ । ତୁମେମାନେ ଆଜ ମୋର ଆହାର ହେବ ।"

Digitized by srujanika@gmail.com

ବୋଧିସତ୍ତ୍ୱ କହିଲେ, "ନା, ତୁମେ ଆମମାନଙ୍କୁ ଖାଇପାରିବ ନାହିଁ ।"

ରାକ୍ଷସ କହିଲା, "ଏଠାରେ ନିକଟରେ ଅନ୍ୟ ଜଳାଶୟ ନାହିଁ । ତୁମେମାନେ ତୃଷାର୍ତ୍ତ । ତେଣୁ ବାଧ୍ୟ ହୋଇ ତୁମେମାନେ ଜଳପାନ କରିବାକୁ ଜଳାଶୟରେ ପ୍ରବେଶ କରିବ ଓ ମୋର ଆହାର ହେବ ।"

ବୋଧିସତ୍ତ୍ୱ କହିଲେ, "ଆମେମାନେ ତୃଷାର୍ତ୍ତ । ତେଣୁ ନିଶ୍ଚୟ ଏହି ପୁଷ୍କରିଣୀର ଜଳ ପାନ କରିବୁ; କିନ୍ତୁ ତାହା ବୋଲି ତୁମେ ଯେ ଆମମାନଙ୍କୁ ଭକ୍ଷଣ କରିବ, ତାହା ହୋଇ ନପାରେ ।"

ରାକ୍ଷସ ବିସ୍ମିତ ହୋଇ ପଚାରିଲା, "ଜଳରେ ପ୍ରବେଶ ନ କରି ଜଳପାନ କରିବ କିପରି ?"

ବୋଧିସତ୍ତ୍ୱ ଉତ୍ତର କଲେ, "ତୁମେ ମନେ କରୁଛ ଯେ ଆମେ ଜଳପାନ କରିବା ପାଇଁ ପୁଷ୍କରିଣୀରେ ପ୍ରବେଶ କରିବୁ । ତୁମର ସେ ଧାରଣା ଭୁଲ । ଆମେ ଜଳରେ ନ ପଶି ମଧ୍ୟ ଜଳପାନ କରିପାରିବୁ । ପାଖରେ ଯେଉଁ ନଳବନ ଅଛି ସେଥିରୁ ଆମେ ପ୍ରତ୍ୟେକେ ଗୋଟିଏ ଲେଖାଏଁ ନଳ ମୁହଁରେ ଲଗାଇ ତାହାର ଦ୍ୱାରା ପୁଷ୍କରିଣୀରୁ ଜଳ ପିଇବୁ । ତୁମେ ଆମଙ୍କୁ ଖାଇପାରିବ ନାହିଁ ।"

ଏହା କହି ବୋଧିସତ୍ତ୍ୱ ଗୋଟିଏ ନଳ ଆଣିଲେ । ସେ ମନ୍ତ୍ର ପାଠକରି ଫୁଙ୍କିଦେବାରୁ ନଳର ଗଣ୍ଠିଗୁଡ଼ିକ ଉଭେଇଗଲା । ଅଶୀ ସହସ୍ର ବାନରଙ୍କ ପାଇଁ ଏହିପରି ଗୋଟିଏ ଲେଖାଏଁ ନଳକୁ ମନ୍ତ୍ର କରିବାକୁ ବହୁତ ସମୟ ଲାଗିବ ବୋଲି ସେ ନଳବଣ ବୁଲିପାଖେ ବୁଲିଆସି ମନ୍ତ୍ର ପାଠକରି କହିଲେ, "ଏହି ନଳବନର ପ୍ରତ୍ୟେକ ନଳର ଗଣ୍ଠି ଦୂର ହୋଇଯାଉ ।"

Digitized by srujanika@gmail.com

ବୋଧିସତ୍ତ୍ୱଙ୍କ ପୁଣ୍ୟବଳରୁ ତାହାହିଁ ହେଲା । ତହୁଁ ପ୍ରତ୍ୟେକ ବାନର ଗୋଟିଏ ଲେଖାଏଁ ନଳ ଧରି ପୁଷ୍କରିଣୀ ତଟଠାରୁ କିଛି ଦୂରରେ ବସିଲେ । ବୋଧିସତ୍ତ୍ୱ ମଧ୍ୟ ସେମାନଙ୍କ ସହିତ ସେହିପରି ବସିଲେ । ତତ୍ପରେ ସେ ନିଜେ ନଳ ସାହାଯ୍ୟରେ ଜଳପାନ କରି ଅନ୍ୟମାନଙ୍କୁ ସେହିପରି କରିବାକୁ ଆଦେଶ ଦେଲେ ।

ରାକ୍ଷସ କ୍ରୁଦ୍ଧ ହୋଇ ଜଳ ମଧ୍ୟରେ ଲୁଚିଗଲା । ବୋଧିସତ୍ତ୍ୱ ଏହି ଉପାୟରେ ଅନୁଚରମାନଙ୍କ ତୃଷା ଦୂର କରିବା ସଙ୍ଗେ ସେମାନଙ୍କର ଜୀବନ ରକ୍ଷାକରି ନିଜ ସ୍ଥାନକୁ ଫେରିଆସିଲେ ।

***

## ମଖାଦେବ ଜାତକ

ପ୍ରାଚୀନକାଳରେ ବିଦେହ ରାଜ୍ୟରେ ମଖାଦେବ ନାମକ ଜଣେ ରାଜା ଥିଲେ । ତାଙ୍କର ରାଜଧାନୀ ଥିଲା ମିଥିଳା । ସେ ଅତ୍ୟନ୍ତ ନ୍ୟାୟପରାୟଣ ଥିଲେ । ରାଜା ଧର୍ମକର୍ମରେ ରତ ଥିବାରୁ ତାଙ୍କ ପ୍ରଜାମାନେ ସୁଖରେ ବାସ କରୁଥିଲେ । ପ୍ରଥମେ ସେ ଯୁବରାଜ, ତତ୍ପରେ ରାଜପ୍ରତିନିଧି ଭାବରେ କାର୍ଯ୍ୟ କରି ରାଜକାର୍ଯ୍ୟରେ ଅଭିଜ୍ଞତା ଅର୍ଜନ କରିଥିଲେ । ପରେ ଯେତେବେଳେ ସେ ନିଜେ ରାଜ-ସିଂହାସନରେ ବସିଲେ, ସେତେବେଳେ ସେ ରାଜଧର୍ମ ପାଳି ପ୍ରଜାମାନଙ୍କର ସୁଖସନ୍ତୋଷ ବିଧାନ କରିଥିଲେ । ଏହିପରି ସେ ଦୀର୍ଘକାଳ ରାଜତ୍ୱ କଲା ପରେ ଦିନେ ତାଙ୍କୁ କ୍ଷୌର କରୁଥିବା ନାପିତକୁ

Digitized by srujanika@gmail.com

କହିଲେ, "ତୁମେ କ୍ଷୌର କଲାବେଳେ ଯଦି କେବେ ମୋର କୌଣସି କେଶ ଶୁକ୍ଳ ହୋଇଥିବାର ଦେଖିବ, ତେବେ ମୋତେ ଜଣାଇବ ।"

ବହୁ ବର୍ଷପରେ ଦିନେ ନାପିତ ରାଜାଙ୍କୁ କ୍ଷୌର କରୁଥିବା ସମୟରେ ତାଙ୍କ ମସ୍ତକରେ ଗୋଟିଏ ଶୁକ୍ଳବର୍ଣ୍ଣର କେଶ ଦେଖିପାରି କହିଲା, "ମହାରାଜ ! ଆଜ ଆପଣଙ୍କ ମସ୍ତକରେ ଗୋଟିଏ ଶୁକ୍ଳକେଶ ଦେଖୁଛି ।"

ରାଜାଙ୍କ ଆଦେଶରେ ନାପିତ ସେହି କେଶଟିକୁ ଉପାଡ଼ି ରାଜାଙ୍କ ହସ୍ତରେ ଦେଲା । ସେତେବେଳକୁ ରାଜାଙ୍କର ଆହୁରି କେତେ ସହସ୍ର ବର୍ଷ ପରମାୟୁ ଥିଲା; କିନ୍ତୁ ସେ ଏହି ଶୁକ୍ଳ କେଶ-ଟିକୁ ଦେଖିବାମାତ୍ରେ ମନେକଲେ, ଯେପରି ଅବା ମୃତ୍ୟୁ ଦେବତା ତାଙ୍କୁ ଆହ୍ୱାନ କରୁଛନ୍ତି । ସେ ମନକୁ ମନ କହିଲେ, "ରେ ମୂର୍ଖ ଅଧମ ମଖାଦେବ ! ତୁ ଏତେ ଅଜ୍ଞ ! ଏତେ ଦିନ ବହିଗଲା, ତଥାପି ତୁ ତୋର ଦୁର୍ବଳତା ତ୍ୟାଗ କରି ପାରିଲୁ ନାହିଁ । ଏବେ ମୃତ୍ୟୁ ତୋର ସମ୍ମୁଖରେ ଉପସ୍ଥିତ । ତୁ କେବେ ଆଉ ସତ୍ପଥକୁ ଆସିବୁ ?"

ଏହିପରି ଭାବୁଭାବୁ ତାଙ୍କର ଶରୀର ଘର୍ମାକ୍ତ ହୋଇଗଲା । ସେ ନିଜର ରାଜପରିଚ୍ଛଦକୁ ଘୃଣି ବିରକ୍ତ ହୋଇ ଉଠିଲେ । ଏହା ତାଙ୍କୁ ଅସହ୍ୟ ବୋଧ ହେଲା । ସେ ତତ୍‌କ୍ଷଣାତ୍ ମନେ ମନେ ପ୍ରତିଜ୍ଞା କଲେ, "ଆଉ ବିଳମ୍ବ କଲେ ହେବ ନାହିଁ । ଆଜ ଏ ସଂସାର ଛାଡ଼ି ସନ୍ନ୍ୟାସ ଗ୍ରହଣ କରିବ ।"

ସେ ନାପିତକୁ ଗୋଟିଏ ଗ୍ରାମ ଦାନକରି ବିଦାୟ ଦେଲେ । ତତ୍ପରେ ନିଜର ଜ୍ୟେଷ୍ଠ ପୁତ୍ରକୁ ଡକାଇ ସେ କହିଲେ, "ହେ ପୁତ୍ର !

Digitized by srujanika@gmail.com

ମୋର କେଶ ଶୁଭ୍ର ହୋଇ ଆସୁଛି । ମୋତେ ବାର୍ଦ୍ଧକ୍ୟ ଆକ୍ରମଣ କଲାଣି । ବହୁକାଳ ମୁଁ ସାଂସାରିକ ସୁଖ ଭୋଗ କଲି । ଏଣିକି ସ୍ୱର୍ଗୀୟ ସୁଖ ଆସ୍ୱାଦନ କରିବାକୁ ମୋର ଅଭିଳାଷ ହେଉଅଛି । ମୁଁ ବର୍ତ୍ତମାନ ସଂସାର ତ୍ୟାଗକରି ସନ୍ନ୍ୟାସ ଗ୍ରହଣ କରିବି । ତୁମେ ରାଜ୍ୟଶାସନର ଭାର ବହନ କର । ମୁଁ ଏଣିକି ନଗର ବାହାରେ ଥିବା ଆମ୍ରକାନନରେ ଗୋଟିଏ କୁଟୀରରେ ରହି ସନ୍ନ୍ୟାସ ଜୀବନ ଯାପନ କରିବି ।"

ନଗରରେ ସମ୍ବାଦ ପ୍ରଚାରିତ ହୋଇଗଲା ଯେ ରାଜା ମଖାଦେବ ରାଜ୍ୟ ତ୍ୟାଗକରି ସନ୍ନ୍ୟାସୀ ହୋଇ ଯାଉଅଛନ୍ତି । ମନ୍ତ୍ରୀ-ମାନେ ଆସି ରାଜାଙ୍କୁ ଜଣାଇଲେ, "ଆପଣଙ୍କର ସନ୍ନ୍ୟାସ ଅବ-ଲମ୍ବନ କରିବାର କାରଣ କଅଣ ?"

ରାଜା ସେହି ଶୁକ୍ଳ କେଶଟିକୁ ଦେଖାଇ ସେମାନଙ୍କୁ କହିଲେ, "ଦେଖ ମୋର ମସ୍ତକରେ ଏଇ ଯେଉଁ ଶୁକ୍ଳକେଶ ଦେଖା ଦେଇଛନ୍ତି, ସେମାନେ ହେଉଛନ୍ତି ଯମରାଜାଙ୍କ ଦୂତ । ସେମାନେ ମୋର ଜୀବନ ନେବାକୁ ଉପସ୍ଥିତ ହେଲେଣି । ମୃତ୍ୟୁକୁ ସମ୍ମୁଖରେ ଦେଖିସୁଦ୍ଧା ବିଷୟ ସୁଖରେ ଲିପ୍ତ ରହିବି କିପରି ? ଜୀବନରେ ଶାନ୍ତି ଲାଭ କରିବା ପାଇଁ ଏହି ସନ୍ନ୍ୟାସ ପନ୍ଥାକୁ ମୁଁ ଗ୍ରହଣ କରିବି ।"

ମନ୍ତ୍ରୀମାନେ ନୀରବ ରହିଲେ । ରଜା ସେହିଦିନ ରାଜପ୍ରାସାଦ ଓ ରାଜପରିଚ୍ଛଦ ତ୍ୟାଗକରି ସନ୍ନ୍ୟାସୀ ହୋଇଗଲେ । ସେଠାରେ ସେ ଜୀବନର ଅବଶିଷ୍ଟ ଅଂଶ ଧ୍ୟାନ ଓ ତପସ୍ୟାରେ କଟାଇ ଶେଷରେ ଶାନ୍ତିରେ ଶେଷ ନିଃଶ୍ୱାସ ତ୍ୟାଗକଲେ ଓ ମୃତ୍ୟୁପରେ ବ୍ରହ୍ମଲୋକରେ ସ୍ଥାନ ପାଇଲେ ।

•••

Digitized by srujanika@gmail.com

# ମୁନିକ ଜାତକ

ଏକ ସମୟରେ ବୋଧିସତ୍ତ୍ୱ ଗୋଟିଏ ବଳଦରୂପେ ଜନ୍ମଗ୍ରହଣ କରିଥିଲେ । ସେତେବେଳେ ତାଙ୍କର ନାମ ଥିଲା ମହାଲୋହିତ । ତାଙ୍କର ଚୂଲ୍ଲଲୋହିତ ବୋଲି ଗୋଟିଏ ଭାଇ ମଧ୍ୟ ଥିଲା । କୃଷକର ଜମି ହଳ କରିବା, ଗାଡ଼ି ଟାଣିବା ପ୍ରଭୃତି କଠିନ କାର୍ଯ୍ୟ ସେମାନଙ୍କୁ କରିବାକୁ ହେଉଥିଲା ।

ସେହି କୃଷକର ଗୃହରେ ଗୋଟିଏ ମେଷ ମଧ୍ୟ ରହିଥିଲା । ତାହାର ନାମ ଥିଲା ମୁନିକ । କୃଷକପତ୍ନୀ ମୁନିକକୁ ଅନ୍ନ ପ୍ରଭୃତି ଖାଇବାକୁ ଦେଉଥିଲେ । କୃଷକ ତାହାପାଇଁ କୋମଳ ପତ୍ର ଓ ତୃଣ ସଂଗ୍ରହ କରି ଆଣୁଥିଲେ । ଏହିପରି ସୁନ୍ଦର ଖାଦ୍ୟ ଖାଇ ମୁନିକର ଶରୀର ଦିନକୁ ଦିନ ସ୍ଥୂଳ ହେଉଥିଲା ।

ମହାଲୋହିତ ଓ ଚୂଲ୍ଲଲୋହିତ ଦିନଯାକ କଠୋର ପରିଶ୍ରମ ପରେ ସାମାନ୍ୟ ନଡ଼ା ଖାଇ, ପାଣି ପିଇ ଦିନକୁଦିନ ଶୁଖିଆସିଲେ । ମେଷଟି ଉତ୍ତମ ଖାଦ୍ୟ ଖାଉଥିବାର ଦେଖି ଚୂଲ୍ଲଲୋହିତର ମନରେ ଈର୍ଷା ହୁଏ । ଆଦୌ କୌଣସି କାର୍ଯ୍ୟ ନ କରି ସେ ସୁନ୍ଦର ଖାଦ୍ୟ ପାଉଛି । ଅଥଚ ସେ ଦୁଇ ଭାଇ ଏତେ ପରିଶ୍ରମ କରି ସୁଦ୍ଧା ଦିନେ-ହେଲେ ପେଟପୂରି ଖାଇବାକୁ ପାଉନାହାନ୍ତି । ଏହା ଚୂଲ୍ଲଲୋହିତକୁ ଅସହ୍ୟ ବୋଧ ହେଲା । ସେ ମନେକଲା ଯେ କୃଷକର ଏ ପକ୍ଷପାତ ବ୍ୟବହାର ଅତି ଅନ୍ୟାୟ ।

ଦିନେ ଚୂଲ୍ଲଲୋହିତ ମହାଲୋହିତକୁ କହିଲା, "ଭାଇ ! ମୁଁ ଦେଖୁଛି, ଆମର ପ୍ରଭୁ ଓ ପ୍ରଭୁପତ୍ନୀ ଆମ ଦୁହିଁଙ୍କ ପ୍ରତି ଘୋର

Digitized by srujanika@gmail.com

ଅନ୍ୟାୟ ବ୍ୟବହାର କରୁଛନ୍ତି । ଆମେ ଦୁହେଁ ତାଙ୍କ ଜମି ଚାଷ କରୁଛେ, ଶଗଡ଼ରେ ଫସଲ ବୁହାଇ ଆଣୁଛେ, ବେଙ୍ଗଳାରେ ଶସ୍ୟ ଅମଳ କରି ଦେଉଛେ । ତଥାପି ସେମାନେ ଆମକୁ ଦିନେ ହେଲେ ପେଟପୂରା ଆହାର ଦେଉନାହାନ୍ତି । ଅଥଚ ଆମରି ଆଗରେ ସେ ଅଳସୁଆ ମେଣ୍ଢାକୁ କିପରି ଆଦର କରୁଛନ୍ତି ଦେଖୁଛ । ତାପାଇଁ ସବୁ ଭଲ ଖାଦ୍ୟ ଅଣା ହେଉଛି । ଏପରିକି ଘରେ ଭାତ ପିଠା ପ୍ରଭୃତି ହେଲେ ସେଥିରୁ କିଛି ସେ ପାଉଛି । ଏପରି ପକ୍ଷପାତ ସତ୍ତ୍ୱ ମୁଁ ସହି ପାରୁନାହିଁ ।”

ଚୂଲ୍ଲଲୋହିତର ଏହି କଥା ଶୁଣି ବୋଧିସତ୍ତ୍ୱ କହିଲେ, “ମୁନିକକୁ ଭଲ ଭଲ ଖାଦ୍ୟ ଦିଆ ଯାଉଅଛି ଓ ଆମକୁ ଶୁଖିଲା କୁଟା ବା ଘାସ ମାତ୍ର ମିଳୁଛି, ସେ କଥା ସତ୍ୟ; କିନ୍ତୁ ଏଥିପାଇଁ ତୁମେ ମୁନିକକୁ ଈର୍ଷା କରି ପ୍ରଭୁ-ପତ୍ନୀଙ୍କୁ ଦୋଷଦେବା ଉଚିତ ନୁହେଁ । ଏଥିର ଏକ ବିଶେଷ କାରଣ ଅଛି । ତେଣୁ ଆମେ ନୀରବ ରହି ଆମର କାର୍ଯ୍ୟ କରିବା ଆବଶ୍ୟକ । ଅନ୍ୟ କେହି ସୁଖରେ ରହୁଛି ଭବି ତାକୁ ହିଂସା କରିବା ଅନୁଚିତ ।”

ଚୂଲ୍ଲଲୋହିତ କହିଲା, “ନା ଭାଇ, ମୁଁ ଏ ପ୍ରକାର ପକ୍ଷପାତ ବ୍ୟବହାରର କୌଣସି କାରଣ ଦେଖି ପାରୁନାହିଁ । ମୁଁ ଏଣିକି ମନ ଦେଇ ପ୍ରଭୁଙ୍କର କାର୍ଯ୍ୟ କରିବ ନାହିଁ ।”

ବୋଧିସତ୍ତ୍ୱ କହିଲେ, “ତୁମକୁ ଏଥିର କାରଣ କହିଲେ ବୁଝି ପାରିବ ଯେ ପ୍ରଭୁ ପକ୍ଷପାତ ବ୍ୟବହାର କରୁନାହାନ୍ତି । ତୁମେ ଜାଣ, ଆଉ କିଛି ଦିନ ପରେ ଆମ ପ୍ରଭୁଙ୍କ କନ୍ୟାର ବିବାହ ହେବ ।”

Digitized by srujanika@gmail.com

ଚୂଲ୍ଲଲୋହିତ—ହଁ, ସେ କଥା ମୁଁ ଶୁଣିଛି; କିନ୍ତୁ ତା ସହିତ ଆମ ପ୍ରତି ବ୍ୟବହାରର ସମ୍ପର୍କ କଣ ?

ମହାଲୋହିତ—ତୁମେ ଧୈର୍ଯ୍ୟଧରି ମୋ କଥା ଶୁଣ । ତାହା ହେଲେ କାରଣଟା ବୁଝି ପାରିବ । ବିବାହ ଉତ୍ସବକୁ ଅନେକ ବନ୍ଧୁ ବାନ୍ଧବ ଓ ଅତିଥି ଆସିବେ ।

ଚୂଲ୍ଲଲୋହିତ—ନିଶ୍ଚୟ ! ମୁଁ ଶୁଣୁଛି ଯେ ବିବାହ ଉତ୍ସବ ଖୁବ୍ ଆଡ଼ମ୍ବରରେ କରାଯିବ ।

ମହାଲୋହିତ—ସେମାନେ ଖାଇବେ କଅଣ ? ସେମାନଙ୍କ ଖାଇବା ପାଇଁ ଭାତ ଡାଲି ପ୍ରଭୃତି ଛଡ଼ା ମାଛ ମାଂସ ମଧ୍ୟ ଦର-କାର । ସେତେବେଳେ ବୁଝିବ, ମୂନିକକୁ କାହିଁକି ଏତେ ସୁନ୍ଦର ଖାଦ୍ୟ ଦେଇ ମୋଟା କରାଯାଉଥିଲା ।

ଚୂଲ୍ଲଲୋହିତ—ତେବେ କଅଣ ଅତିଥିମାନଙ୍କ ଭୋଜନ ପାଇଁ ଏହାକୁ ଏପରି ସୁନ୍ଦର ଖାଦ୍ୟ ଦେଇ ମୋଟା କରୁଛନ୍ତି ?

ମହାଲୋହିତ—ନିଶ୍ଚୟ, ଏଥିରେ କିଛି ସନ୍ଦେହ ନାହିଁ । ମୂନିକର କି ଅବସ୍ଥା ହେବ ତାହା ତୁମେ ସ୍ୱଚକ୍ଷୁରେ ଦେଖିବ ।

ବିବାହ ଦିନ ଉପସ୍ଥିତ ହେଲା । ଅତିଥିମାନେ ଆସିବାରୁ ସେମାନଙ୍କ ଭୋଜନର ବ୍ୟବସ୍ଥା କରାଗଲା । କେତେଜଣ ଲୋକ ମୂନିକକୁ ବାନ୍ଧି ହତ୍ୟା କଲେ ଓ ତାର ମାଂସରେ ବ୍ୟଞ୍ଜନ ପ୍ରସ୍ତୁତ କରି ଅତିଥିମାନଙ୍କୁ ଖାଇବାକୁ ଦେଲେ ।

ମହାଲୋହିତ ସାନଭାଇକୁ ଡାକି କହିଲେ, "ଏବେ ମୂନି-କର ଦଶା କଅଣ ହେଲା ଦେଖିଲ ? ସାମାନ୍ୟ ଆହାର ଖାଇ ଓ

Digitized by srujanika@gmail.com

ଜଳ ପିଇ ବଞ୍ଚିରହିବା ଭଲ କି ସୁଖାଦ୍ୟ ଖାଇ ଏପରି ପ୍ରାଣ ଦେବା ଭଲ, ବିଚାର କର । ଏବେ ତୁମେ ସ୍ୱୀକାର କରିବ ଯେ ପ୍ରଭୁ ପକ୍ଷପାତ ବ୍ୟବହାର କରୁ ନ ଥିଲେ । ଯେଉଁ ଶୁଖିଲା କୁଟା ମିଳୁଛି ତାକୁ ହିଁ ଖାଇ ସନ୍ତୋଷରେ ରହିବା ଆମର କର୍ତ୍ତବ୍ୟ ।”

ଚୁଲ୍ଲଲୋହିତ କହିଲା, “ଭାଇ ସେ କଥା ସତ; ଭଲ ଖାଦ୍ୟ ଖାଇ ଅକାଳରେ ମରିବାଠାରୁ କୌଣସିମତେ ଜୀବନ ଧରି ରହିବା ସହସ୍ର ଗୁଣେ ଭଲ । ଏଣିକି ପରକୁ ଈର୍ଷା ନ କରି ମୁଁ ମୋର କାର୍ଯ୍ୟ କରିବି ।” ...

( ପ୍ରଥମ ଖଣ୍ଡ ସମାପ୍ତ )

Digitized by srujanika@gmail.com